ନୂତନ ସିଲବସ୍ ଅନୁଯାୟୀ ଲିଖିତ

# ନାଗରିକ ପାଠମାଳା

## ତୃତୀୟ ପୁସ୍ତକ

( ତୃତୀୟ ଶ୍ରେଣୀ ନିମନ୍ତେ )

ଲେଖକ
ଡକ୍ଟର ଶ୍ରୀ ମାୟାଧର ମାନସିଂହ
ଅଧ୍ୟକ୍ଷ, ଜି : ଏମ୍ : କଲେଜ, ସମ୍ବଲପୁର

ନୂତନ ସଂସ୍କରଣ

୧୯୫୨

ପ୍ରକାଶକ :—
ଶ୍ରୀ ସତ୍ୟନାରାୟଣ ମିଶ୍ର
ଓଡ଼ିଶା ପବ୍ଲିଶିଂ ହାଉସ୍
ବ୍ରହ୍ମପୁର : କଟକ : ସମ୍ବଲପୁର

ମୂଲ୍ୟ ନବ ଅଣା
ଅତିରିକ୍ତ ଦୁଇ ଅଣା

# ଭୂମିକା

ଏହି ପୁସ୍ତକ ବୁଝିବା ପଢ଼ିବା ପିଲାଙ୍କର ବୟସ ୭, ୮, ୯ ବର୍ଷ ହୋଇ ଯିବଣି । ଏମାନେ ବର୍ତ୍ତମାନ ରୂପକଥାର ସ୍ତରରୁ ଅସି ନିଜର ପରିବାର, ଗ୍ରାମ, ମହଲ୍ଲା ବା ଛୋଟ ସହରର ସ୍ତର ସଙ୍ଗେ ସାମାନ୍ୟ ଘନିଷ୍ଠ ଭାବରେ ପରିଚିତ ହେବେଣି । ଏମାନେ ସ୍ପଷ୍ଟ ଜଗତକୁ ରୂପକଥାର ଜଗତ ଅପେକ୍ଷା ଅଧିକ ବାସ୍ତବ ବୋଲି ମନେ କରିବାର ଆରମ୍ଭ କରିବେଣି । ଏମାନଙ୍କ ଭିତରେ ଗପ ଶୁଣିବାର ପ୍ରଲୋଭନ ପୂର୍ବ ପରି ପ୍ରବଳ ଥିଲେହେଁ, ଯାହା ଅମାନୁଷିକ, ଯାହା ଅସମ୍ଭବ, ତାହା ପ୍ରତି ପୂର୍ବର ସହଜ ବିଶ୍ୱାସ ଆଉ ସମ୍ଭବ ହେବ ନାହିଁ । ଗପ ଶୁଣିବେ, କିନ୍ତୁ ତାହା ଜୀବଜନ୍ତୁ, ଅସୁର ଅପ୍ସରୁଣୀଙ୍କୁ ନ ନେଇ ବର୍ତ୍ତମାନର ପରିଚିତ ସମାଜ, ପରିଚିତ ମନୁଷ୍ୟଙ୍କୁ ନେଇ ହେବା ଉଚିତ ।

ଏ ପୁସ୍ତକ ବୁଝିବାକୁ ଶିଶୁ ମନର ଏଇ ଦ୍ୱିତୀୟ ସ୍ତରର ଉପଯୋଗୀ ହେଲା ଭଳି ଲେଖିଛୁ ।

ପ୍ରବନ୍ଧ, କବିତା, ଗପ ଇତ୍ୟାଦି ଆମ ଦେଶର ଶିଶୁର ଏଇ ବୟସରେ ଅଭିଜ୍ଞତାର ପରିସର ଯେତିକି ହେବ, ସେତିକି ଭିତରେ ରଖିବାକୁ ଯଥା ସମ୍ଭବ ଚେଷ୍ଟା କରିଛୁ । କବିତାଗୁଡ଼ିକ ବୋଉ, ଭାଇ ଭଉଣୀ, ପରିବାର, ଗ୍ରାମ, ଗାଁର ଗୃହ ଇତ୍ୟାଦିକୁ ନେଇ ଲେଖା । ସେଇ ପରିବେଶ ଭିତରେ ଗଳ୍ପ ସାହାଯ୍ୟରେ ଯେତେଟା ନୀତି ଓ ଆଦର୍ଶ ଶିକ୍ଷା ଦିଆଯାଇ ପାରିବ, ତା'ର ଚେଷ୍ଟା

କରାଯାଇଛି । ତାର ଶ୍ରେଷ୍ଠ ପରିସର ଭିତରୁ ଶିଶୁର କଳ୍ପନାକୁ ବିସ୍ତାରିତ କରିବାକୁ ଚେଷ୍ଟା କରାଯାଇଛି; କେବଳ ଅନ୍ୟ ଦୁଇ ତିନୋଟି ଦେଶର ବାଳକ ବାଳିକାଙ୍କ ଗପ କହି ଓ ଆମର ଦେଶୀ ସଙ୍ଗେ କେତୋଟି ବିଦେଶୀ 'ଗୁଡ଼ି ଘୋଡ଼ିଆ' ବନ୍ଧୁଙ୍କ ବର୍ଣ୍ଣନା ଦେଇ ।

ଲେଖକ

# ସୂଚିପତ୍ର

---



## ଜଣାଣ

( ଖଣ୍ଡ—ଗେୃଷ )

ଅତି କ୍ଷୁଦ୍ର ଶିଶୁ ମୁହିଁ ଭଲ ମନ୍ଦ ନ ଜାଣଇ
ପ୍ରଭୁ ତମେ, ବୁଦ୍ଧି ମୋତେ ଦିଅ ବତାଇ,
ମୋର ହାତ ସ୍ନେହେ ଧର ଅଜଣା ସନ୍ତାନ ପର
ଅବାଟରେ ଗଲେ ବାଟେ ନିଅ କଢ଼ାଇ ।

ଦେହେ ମୋର ଦିଅ ବଳ ମନେ ବୁଦ୍ଧି କଉଶଳ
ଭଲକାମେ ପ୍ରଭୁ ସଦା ଲାଗୁ ମୋ ମନ,
ବାପା ମାଆ ପ୍ରତିବେଶୀ ଅନବନ୍ଧୁ ଗ୍ରାମବାସୀ
ସଭିଙ୍କର ସେବାକୁ ମୁଁ ହେବି ଭାଜନ ।

ପାପକୁ କରିବି ଭୟ ଶୁଭ କାମେ ଦେବି ଲୟ
ଜ୍ଞାନ ଅରଜନ କରି ହେବି ପଣ୍ଡିତ,
ଧନ ଯାହା ଅରଜିବି ଦୁଃଖୀଙ୍କ ସେବାରେ ଦେବି
ଦେଖୁଥିବି ସବୁବେଳେ ପରର ହିତ ।

କଢ଼ିରୁ ଫୁଲ ଯେପରି ଫୁଟେ ଧୀରେ, ସେହିପରି
ପିଲାରୁ କ୍ରମରେ ମଣିଷ ହେବ ବଡ଼,
ପ୍ରାର୍ଥନା ଏତିକି ଦେବ ମୋ ଦ୍ୱାରରେ ମହତ୍ତ୍ୱ
ଘର, କୁଳ, ଗାଆଁ ଦେଶ ଜାଣୁ ମୋହର ।

ପ୍ରଶ୍ନ—୧ । କି କି କାର୍ଯ୍ୟ କଲେ ମନୁଷ୍ୟ ସଂସାରରେ ପ୍ରଶଂସା ଲାଭ କରେ ?

୨ । ଈଶ୍ୱରଙ୍କୁ ସବୁବେଳେ କାହିଁକି ପୂଜା କରନ୍ତି ?

୩ । ପ୍ରତିବେଶୀ, ସ୍ୱଜନ, ହିତ, ପ୍ରାର୍ଥନା, ସନ୍ତାନ, ମହତ୍ତ୍ୱ, କୁଳ—ଏ ଗୁଡ଼ିକର ଅର୍ଥ କହ ।

୪ । ତଳେ କେତେକ ଶବ୍ଦ ଦିଆ ଯାଇଅଛି, ସେଥିମଧ୍ୟରୁ କିଏ କାହାର ଓଲଟା ଅର୍ଥ, ଖୋଜି ବାହାର କର ।

| | | | |
|---|---|---|---|
| ସାନ | ଭଲ | ପୁଣ୍ୟ | ବଡ଼ |
| ଧୀର | ଦେଶ | ଚଞ୍ଚଳ | ହିତ |
| ମନ୍ଦ | ପାପ | ଅହିତ | ବିଦେଶ |

## ବୁଧବାର ପରୋପକାର

ସମୁଦ୍ରକୂଳର ପାହାଡ଼ଟି ଉପରେ ବୁଧବାଟିଏ ଗୋଟିଏ କୁଡ଼ିଆ କରି ରହୁଥାଏ । ଦିନେ ସେ ରାତିରେ ବସି ବସି ଭାବିବାକୁ ଲାଗିଲା—ମୁଁ ତ ଅସି ବୁଢ଼ୀ ହେଲି—ଏତେ ଦିନ ବଞ୍ଚିଲି, କିନ୍ତୁ ପରର ଉପକାର କିଛି କଲି ନାହିଁ । ଜନ୍ମ ହୋଇଥିଲି ଖାଲି କ'ଣ ନିଜେ ସୁଖରେ ବଞ୍ଚିବାକୁ ? ଏହିପରି ଭାବୁ ଭାବୁ ତା ମନରେ ହଠାତ୍ ଗୋଟିଏ କଥା ଉଠିଲା । ତାର ମନେ ପଡ଼ିଲା ଯେଉଁ ପର୍ବତ ଉପରେ, ତାର କୁଡ଼ିଆ ଥିଲା, ଅନେକ ବୋଇତ ସେହି ପର୍ବତରେ ବାଜି ଭାଙ୍ଗିଯାଏ । କାରଣ ଅନ୍ଧାର ରାତିରେ ନାବିକ-ମାନେ କୂଳ ଦେଖି ପାରୁ ନ ଥିଲେ, ଏବଂ ସେମାନଙ୍କୁ ଏହା ଜଣେଇ ଦେବାଲାଗି କୌଣସି ବନ୍ଦୋବସ୍ତ ନାହିଁ । ବୁଧବା ଭାବିଲା, ଯଦି ସେ ତାର ଝରକା ପାଖରେ ରାତିସାରା ଗୋଟିଏ ଆଲୁଅ ଦେଖାଇ ପାରନ୍ତା, ତେବେ ଏତେ ଲୋକ ମରନ୍ତେ ନାହିଁ, କି ଏତେ ଜାହାଜ ନଷ୍ଟ ହୁଅନ୍ତା ନାହିଁ । କିନ୍ତୁ ରାତିସାରା ଜାଳିବା-ପାଇଁ ବହୁତ ତେଲ ଦରକାର । ସେ ଏତେ ତେଲ ପାଇଁ ପଇସା ପାଇବ କେଉଁଠୁ ? ସେ ବିଚାର କଲା, ସେ ଯଦି ରାତିରେ ଅଧିକା ଘଣ୍ଟାଏ ଲେଖେଁ କାମ କରେ, ତେବେ ତେଲପାଇଁ ପଇସା ପାଇପାରିବ । ଏହି ବିଚାର କରି ସେ କାମରେ ଲାଗିଲା । ତତ୍‌ପରେ ତାର ଝରକା ପାଖରୁ ରାତିକି ରାତି ଆଲୁଅ ଦେଖାଇ-ବାକୁ ଲାଗିଲା ।

ଏହିପରି ପାଞ୍ଚବର୍ଷ କଟିଗଲା । ବୁଢ଼ୀ କାହାଠାରୁ ପୁରସ୍କାର ଆଶା କରି ନ ଥାଏ । ସେ କେବଳ ନିଃସ୍ୱାର୍ଥ ଭାବରେ ପରର ଉପକାର ପାଇଁ ତାହା କରୁଥାଏ । କିନ୍ତୁ ସତ୍‌କର୍ମ କେବେହେଲେ

ଅଛପା ରହେ ନାହିଁ । ନାବିକମାନେ କ୍ରମେ ଜାଣିଲେ, ସେ ବିଧବା ସେମାନଙ୍କର କେତେ ଉପକାର କରୁଛନ୍ତି । ତେଣୁ ସେମାନେ କ୍ରମେ ଉପହାର ପଠାଇବାକୁ ଲାଗିଲେ । ବୁଢ଼ୀ ଏତେ ଜିନିଷ



ଉପହାର ପାଇବାକୁ ଲାଗିଲା ଯେ ସେ ସବୁ ବିକିଥିଲେ ସେ ବଡ଼ ଧନୀ ହୋଇ ପାରିଥାନ୍ତା । କିନ୍ତୁ ସେ ଉପହାରଗୁଡ଼ିକୁ ବିକୀ ନ କରି ଗରିବମାନଙ୍କୁ ବାଣ୍ଟି ଦେଉଥିଲା ।

ବିଧବାର କାର୍ଯ୍ୟରୁ ସ୍ପଷ୍ଟ ବୁଝାଯାଉଛି, ଲୋକ ଦରିଦ୍ର ହେଲେ ମଧ୍ୟ ପରର ଉପକାର କରିପାରେ, କେବଳ ଲୋକର ମନ ଥିଲେ ହେଲା ।

ପ୍ରଶ୍ନ—୧ । ବୁଢ଼ୀ ଘରେ ଝରକା ପାଖରେ ପ୍ରତିଦିନ ଅଳ୍ପ ଜାଳିଲା କାହିଁକି ?

୨ । ବୁଢ଼ୀ ତେଲପାଇଁ ଖର୍ଚ୍ଚ କରିବାକୁ କି ଉପାୟ କଲା ?

୩ । ବୁଢ଼ୀ ନାବିକମାନଙ୍କଠାରୁ ଯାହା ସମ୍ପତ୍ତି ପାଇଲା, ତାହା କ'ଣ କଲା ?

୪ । ଉପହାର, ନିଃସ୍ୱାର୍ଥ, ସତ୍‌କର୍ମ, ସ୍ପୃଷ୍ଟ, ଏମାନଙ୍କର ଅର୍ଥ କହ ।

୫ । ଏହି ଗଳ୍ପ ପାଠକରି କି ନୀତିଶିକ୍ଷା ପାଇଲ ?

---

## ସନାତନ

ନଅଙ୍କ ଦୁର୍ଭିକ୍ଷ କଥା ସମସ୍ତେ ଶୁଣିଥିବେ । ସେହି ଦୁର୍ଭିକ୍ଷରେ ଆମର ଏଇ ଓଡ଼ିଶା ଦେଶରୁ ଦଶଲକ୍ଷ ଲୋକ ଖାଇବାକୁ ନ ପାଇ ମରିଯାଇଥିଲେ । ଲଗ୍ ଲଗ୍ ଦୁଇବର୍ଷକାଳ ଏ ଦେଶରେ ଫସଲ ନଷ୍ଟ ହେବାରୁ, ଲୋକେ ଧାନ ଚାଉଳ ଖାଇବାକୁ ପାଇଲେ ନାହିଁ । ଶେଷକୁ ଲୋକେ ଗଛପତ୍ର, ବଣର ଶାଗ ଓ ପଡ଼ିଆର ଘାସ ଖାଇବାକୁ ଲାଗିଲେ । ତାହା ମଧ୍ୟ କିଛିଦିନ ପରେ ମିଳିଲା ନାହିଁ ।

କେନ୍ଦ୍ରାପଡ଼ା ପାଖରେ ଗୋଟିଏ ଗାଁରେ ଜଣେ ବ୍ରାହ୍ମଣ ଥାନ୍ତି । ସେ ବଡ଼ ଦରିଦ୍ର । ଧାନ ଚାଉଳ ତାଙ୍କର ଆସିବ କୁଆଡୁ ? ସେ ସାଧାରଣତଃ ଭିକ ମାଗି ଚଳନ୍ତି । କିନ୍ତୁ ଦୁର୍ଭିକ୍ଷ ସମୟରେ ଭିକ ଦେବ କିଏ ?

ତାଙ୍କର ବଡ଼ପୁଅର ନାମ ସନାତନ । ସନାତନ ଦେଖିବାକୁ ଯେପରି ସୁନ୍ଦର, ଗୁଣରେ ମଧ୍ୟ ସେହିପରି । ସନାତନର ଗୋଟି

ଘର ଭଉଣୀ ମଧ୍ୟ ଥିଲେ । ବୁଢ଼ାବୁଢ଼ୀ ଓ ଭାଇଭଉଣୀଙ୍କର ସନାତନହିଁ ଏକମାତ୍ର ଆଶା ।

ଦୁର୍ଭିକ୍ଷ ଆରମ୍ଭ ହେଲାବେଳେ ସନାତନ ସକାଳୁ ଭିକ ମାଗିବାକୁ ବାହାରେ ଓ ଭିକ ମାଗି ମାଗି ଯାହା ପାଏ, ତାକୁ ଆଣି ଘରେ ଦଏ । କୁଟୁମ୍ବଟିଯାକ ଦିନାକେତେ ଏହିପରି ଚଳିଲେ; କିନ୍ତୁ କ୍ରମେ ଭିକ ମିଳିଲା ନାହିଁ । ତେଣୁ ସନାତନ ପାଖ ଆଖ ଜଙ୍ଗଲକୁ ଯାଇ ଶାଗ ଓ ନାନାପ୍ରକାର ଲଟାପତ୍ର ସଂଗ୍ରହ କରି ଘରେ ଖାଇବାକୁ ଦେଲା । ତାକୁ ସିଝାଇ କୁଟୁମ୍ବଯାକ ଖାନ୍ତି । ଅନେକ ସମୟରେ ତାହା ମଧ୍ୟ ଅଣ୍ଟେ ନାହିଁ । ତେଣୁ ସନାତନ, ଯାହା ସିଝା ହୁଏ, ତାହାକୁ ସବୁ ଭାଇଭଉଣୀଙ୍କୁ ଦେଇଦିଏ । ଖାଇବାକୁ ଡାକିଲେ ସେ ଭୁଲେଇ କରି କହେ, ସେ ବଣରେ ଖାଇ ଆସିଛି । କ୍ରମେ ବଣରୁ ମଧ୍ୟ ଲଟାପତ୍ର ଶେଷ ହୋଇଆସିଲା । ସନାତନ, ତାର ଭାଇଭଉଣୀ ଓ ବୁଢ଼ାବୁଢ଼ୀ ସମସ୍ତେ ଭୋକରେ ଛଟପଟ ହେବାକୁ ଲାଗିଲେ । ସନାତନ ପୁଣି ଭିକ ମାଗିବାକୁ ଗଲା । ଦୁଇଦିନ ଯାଏଁ ଭିକ ଅଧେ ମିଳିଲା ନାହିଁ । ସେ ଖାଲିହାତରେ ଘରକୁ ଫେରିଆସି, ଭାଇଭଉଣୀଙ୍କ କଷ୍ଟ ଦେଖି କାନ୍ଦେ । ଶେଷରେ ସେ ଅନ୍ୟ ଆଶା ନ ପାଇ ପୁଣି ଦିନେ ଭିକ ମାଗିବାକୁ ବାହାରିଲା । ବହୁତ ଗାଁ ବୁଲିବାପରେ ଗୋଟିଏ ଗାଁରେ ଜଣେ ଲୋକ ତାକୁ କିଛି ଭାତ ଦେବାକୁ କହିଲା । ସନାତନ ବାଧ୍ୟ ହୋଇ ଭାତ ଗ୍ରହଣ କରିବାକୁ ମଙ୍ଗିଲା । କିନ୍ତୁ ଲୋକଟି ଥାଳିଆରେ ଭାତ ବାଢ଼ି ତାକୁ ଖାଇବାକୁ ଡାକିବାରୁ ସନାତନ ମନା କଲା । କାରଣ ପଚାରିବାରୁ ସେ କହିଲା ତା'ର ଭାଇଭଉଣୀ ଓ ବାପା ମା ନ ଖାଇ ଭୋକରେ ପଡ଼ିଛନ୍ତି । ସେମାନଙ୍କ ତୁଣ୍ଡରେ ଅନ୍ନ ନ ଦେବାଯାଏ ସେ ଅନ୍ନ ଗ୍ରହଣ କରିବ

ନାହିଁ । ଲୋକଟି କହିଲା "ତମେ ଅଗ ଖାଅ । ପରେ ତମ ଭାଇ ଭଉଣୀଙ୍କପାଇଁ ପୁଣି ଭାତ ଦେବୁଁ ।" କିନ୍ତୁ ସେ କୌଣସିମତେ ମାନିଲା ନାହିଁ ।



ଭାତ ଧରି ସନାତନ ଫେରିଲାବେଳକୁ ଦ୍ୱିପହର । ତା ଗାଁ ବହୁତ ଦୂରରେ । ସେ ଦୁଇଦିନ ହେଲା ଖାଇନାହିଁ । ଚାଲି ଚାଲି ଥକି ଗଲାଣି । ଖଣ୍ଡେଦୂର ଯାଇଛି, ସେ ଚାଲି ନ ପାରି ଗୋଟିଏ ଗଛମୂଳେ ବସୁ ବସୁ ତା'ର ପକ୍ଷୀ ପ୍ରାଣ ଦେହରୁ ବାହାରିଗଲା ।

ପ୍ରଶ୍ନ—୧ । ଦୁର୍ଭିକ୍ଷ ହେବାର କାରଣ କ'ଣ ?

୨ । ସନାତନ କିପରି ଭାବରେ ତାହାର ଭାଇଭଉଣୀ ଓ କୁଟୁମ୍ବକୁ ପୋଷୁଥିଲା ?

୩ । ବେଳେବେଳେ ସନାତନ ନିଜେ ନ ଖାଇ ତା ଭାଗ ଅନ୍ୟମାନଙ୍କୁ କାହିଁକି ଦିଏ ?

୪ । ତାର ଭାଇଭଉଣୀ ନ ଖାଇଲେ ସନାତନ ଭାତ ଖାଇବ ନାହିଁ ବୋଲି କାହିଁକି କହୁଥିଲା ?

୫ । ସନାତନର ମୃତ୍ୟୁରେ ତାର ବାପ, ମା, ଭାଇ, ଭଉଣୀ, ମାନଙ୍କର କ'ଣ ହୋଇଥିବ ?

୬ । 'ପବନ ପ୍ରାଣ ଦେହରୁ ବାହାରିଗଲା'—ଏଥିରୁ କ'ଣ ବୁଝିଲ ?

---

## ସାଧବ ପୁଅ

( ବୃତ୍ତ—କାଳୀ )

ସାଧବ ପୁଅ କୁଆଡ଼େ ଯାଅ ହୋଇ ଦରିଆ ପାରି
ଡମ୍ଫ ବୋଇତେ ନେବକି ମତେ ଫିରିବୁଁ ଘର ଗୁଣ୍ଡି

କାଠି ଲହଡ଼ି ବୋଇତ ମାଡ଼ି ଚାଲିବ ସମୁଦ୍ରରେ
ଧବଳ ହଂସ ପରି ସରସ ନୀଳ ଆକାଶ ତଳେ ।

ବୋଇତ ତବ ଯାଇ ଲଗିବ ଅଜଣା ଘାଟେ କେତେ !
ଦେଶ ବିଦେଶ ନୂଆ ମଣିଷ ଦେଖନ୍ତି, ନିଅ ସାଥେ ।

ଦରିଆ ପାରେ ଗଛରୁ ପଡ଼େ ପରି ମଣିଙ୍କ ଝୁଣ୍ଡ
ଫିଙ୍ଗିଏ ପରି ଢୁଅନ୍ତି ହୀରା, ମୁକୁତା ଛଡ଼ାଛଡ଼ି ।

ନୀଳ ମାଣିକ— ଚନ୍ଦ୍ରତ ଶିଖ ଉପରୁ ରୂପା ନଈ
ଅସରି ବହୁ ସଙ୍ଗୀତ ଗାଇ, କି ସୁଖ ଏଠି ରହି ?

ସାଧବ ପୁଅ ସାଥିରେ ନିଅ ସେଇ ଦରିଆ ପାରେ
ବୋଇତ ଧରି ଅସନ୍ତ ଘୂରି ଦୁନିଆ ସାରା' ବାରେ ।



ସଜଡ଼ା ଉବ   ଯାହାଙ୍କ ଦେବ   ବାଜବ ଘାଟେ ଘାଟେ
ବୋଲବ ଯାହା   ମାନବ ତାହା   ହୋଇବ ସାହା ବାଟେ ।

---

## ଜିଆ

ବେଶୀ ବର୍ଷା ହୋଇ ଗଲେ ଜିଆ ବା କେଞ୍ଚୁଅ ମାଳ ମାଳ ହୋଇ ଜୁଅଡ଼ୁ ବାହାରନ୍ତି ଓ ଗୁଡ଼ୁଅଡ଼େ ବୁଲନ୍ତି । ବେଳେ ବେଳେ ଘର ଭିତରେ ପଶିଯାଇ ସଲବଲ ହୁଅନ୍ତି । ଜିଆର ଆଖିନାହିଁ, କାନ ନାହିଁ, ନାକ ନାହିଁ । ସେ ତାହାର ଦେହର ଚମଡ଼ାଦ୍ୱାରା ଖାଏ ଓ ପିଏ । ଚମଡ଼ାରେ ଅନୁଭବ କରି କରି ଗୁଡ଼ୁଅଡ଼େ ବୁଲେ । ସେଥିପାଇଁ ତା ଚମଡ଼ାଟି ସବୁବେଳେ ଓଦା

ରହୁଥାଏ । ଶୁଖିଲା ମାଟିରେ ପଡ଼ିଗଲେ ଜିଆର ଚମଡ଼ା ଶୁଖି ଆସେ ଓ ସେ ଶୀଘ୍ର ମରିଯାଏ । ଖରାଦିନେ ଉପରମାଟି ଯେତିକି ଯେତିକି ଶୁଖିଯାଏ ଜିଆମାନେ ସେତିକି ସେତିକି ମାଟିତଳକୁ ଚାଲିଯାନ୍ତି । କାରଣ ତଳମାଟି ଓଦା ଥାଏ । ବେଶୀ ବର୍ଷା ହେଲେ ବହୁତ ପାଣିରେ କାଳେ ବୁଡ଼ି ମରିଯିବେ ବୋଲି ସେମାନେ ଉପରକୁ ଉଠି ଶୁଖିଲା ମାଟି ଖୋଜି ବାହାରନ୍ତି । ସେଥିପାଇଁ ସେମାନେ ବର୍ଷାବେଳେ ଆସି ଘରେ ପଶନ୍ତି ।

ଜିଆ ଗୋଟିଏ ସାମାନ୍ୟ ଜୀବ । ପିମ୍ପୁଡ଼ିମାନେ ମିଶି ଜିଆକୁ ମାରିପକାନ୍ତି । କୁକୁଡ଼ା ପ୍ରଭୃତି ପକ୍ଷୀମାନେ ତାକୁ ଖାଇଯାଆନ୍ତି । ଲୋକେ ଜିଆମାରି ଖଣ୍ଡ ଖଣ୍ଡ କରି ବନ୍ସୀକଣ୍ଟାରେ ଖଞ୍ଜି ମାଛ ଧରନ୍ତି । କିନ୍ତୁ ଜିଆ ମନୁଷ୍ୟର କେତେ ଯେ ଉପକାର କରେ ତାହା କେହି ଭାବନ୍ତି ନାହିଁ । ଭଗବାନଙ୍କ ସୃଷ୍ଟି ଏପରି ବିଚିତ୍ର ଯେ ସାମାନ୍ୟ ଜିଆ ମଧ୍ୟ ଜଗତର ମଙ୍ଗଳ କରେ ।

ଜିଆ ମାଟିରୁ ତାହାର ଖାଦ୍ୟ ସଂଗ୍ରହ କରେ । ଖାଇବା ପୂର୍ବରୁ ସେ ମାଟିକୁ ଅତି ସୂକ୍ଷ୍ମ ଭାବରେ ଗୁଣ୍ଡ କରେ । କେତେକ ଖାଏ, ଅଧିକାଂଶ ତା ଗାତମୁହଁରେ ଛାଡ଼ିଯାଏ । ବିଲମାନଙ୍କରେ ଏଇ ଚିକ୍କଣ ଜିଆମାଟି ଗ୍ଲୋଟ ଗ୍ଲୋଟ ଗଦା ହୋଇ ସକାଳେ ଜମା ହୋଇଥିବାର ତୁମ୍ଭେମାନେ ଦେଖିଥିବ । ଏହି ଜିଆମାଟି କ୍ଷେତକୁ ଭାରି ଉପକାର କରେ । ଜିଆ ତଳମାଟି ଉପରକୁ ଆଣି ଚଷାକୁ ହଳକାମରେ ସାହାଯ୍ୟ କରେ । ଜିଆ ଖାଇବା ଉଦ୍ଦେଶ୍ୟରେ ଯେଉଁ ଗାତ ଓ ନଳା ସବୁ କରି କରି ଯାଇଥାଏ ତା ଭିତର ଦେଇ ଆଲୁଅ, ପବନ ଓ ପାଣି ଯାଇ ଗଛକୁ ବଢ଼ାଇବାରେ ସାହାଯ୍ୟ କରେ । ଗଛର ଚେରସବୁ ଜମିତଳେ ଏଇ ଜିଆ କରିଥିବା ନାଳରେ ନାଳରେ ମାଡ଼ିବାର ଦେଖା ଯାଇଥାଏ ।

ଶ୍ଳୋଚ୍ଚ ଜିଆ ଅଖି ନାହିଁ କାନ ନାହିଁ, ନାକ ନାହିଁ, ପାଟି ନାହିଁ, ମସ୍ତିଷ୍କ ନାହିଁ, ସେ ଆମର ଏତେ ଉପକାର କରୁଛି । ଆମକୁ ବିଧାତା ଏ ସବୁ ଦେଇଛନ୍ତି । ସାମାନ୍ୟ ଜିଆ ଯେବେ ଏତେ ଉପକାର କରିପାରେ ଆମେ ମଣିଷ ହୋଇ କଅଣ କରିବା ଭାବିବାର କଥା । ଜିଆଠୁ ଏଇ କଥା ଶିଖିବା ଉଚିତ ଯେ ଆମେ ସବୁବେଳେ ଅନ୍ୟର ଉପକାର କରି ଜୀବନକୁ ସାର୍ଥକ କରିବା ।

ପ୍ରଶ୍ନ—୧ । ଜିଆର ଅଖି, କାନ, ନାକ ପ୍ରଭୃତି କିଛି ନାହିଁ । ସେ କିପରି ଖିଆ ପିଆ କରି ଚଳେ ?

୨ । ଖରାଦିନେ ଉପରମାଟି ଯେତିକି ଯେତିକି ଶୁଖି ଯାଇଥାଏ, ଜିଆମାନେ ସେତିକି ସେତିକି ମାଟି ତଳକୁ ଚାଲିଯାନ୍ତି—କାହିଁକି ?

୩ । ବର୍ଷାଦିନେ ସେମାନେ ଆସି ଘରେ ପଶନ୍ତି କାହିଁକି ?

୪ । "ଜିଆ ଜଗତର ମଙ୍ଗଳ କରେ" କିପରି ବୁଝାଇ ଦିଅ ।

---

## ପିଲା ବିଦ୍ୟାସାଗର

ଆମ ଦେଶରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପରି ବଡ଼ଲୋକ ଖୁବ୍ ଅଳ୍ପ କମ୍ ଜନ୍ମ ହୋଇଛନ୍ତି । 'ବିଦ୍ୟାସାଗର' ଶବ୍ଦର ଅର୍ଥ 'ପାଠର ସମୁଦ୍ର' । ପ୍ରକୃତରେ ଈଶ୍ୱରଚନ୍ଦ୍ର ଏତେ ପାଠ ପଢ଼ିଥିଲେ ଯେ, ଲୋକେ ତାଙ୍କୁ 'ବିଦ୍ୟାସାଗର' ବୋଲି ଡାକୁଥିଲେ । ସେ ଇଂରାଜୀ, ସଂସ୍କୃତ ଓ ବଙ୍ଗଳାଭାଷାରେ ଖୁବ୍ ବଡ଼ ପଣ୍ଡିତ ଥିଲେ । ବିଦ୍ୟାବଳରେ



ସେ ଜୀବନରେ ବହୁତ ଟଙ୍କା ରୋଜଗାର କରିଥିଲେ । କିନ୍ତୁ ଟଙ୍କା ଜମା ରଖି ଧନୀ ହେବା ତାଙ୍କର ଇଚ୍ଛା ନ ଥିଲା । ତାଙ୍କର ସବୁ ଟଙ୍କା ସେ ଦୁଃଖୀ ଲୋକମାନଙ୍କୁ ବାଣ୍ଟି ଦେଉଥିଲେ । ତାଙ୍କର ଏହି ସବୁ ଗୁଣଯୋଗୁଁ ଲୋକେ ତାଙ୍କୁ ଖୁବ୍ ମାନୁଥିଲେ । ଲାଟ୍ ସାହେବଙ୍କଠାରୁ ଆରମ୍ଭ କରି ସାଧାରଣ ଲୋକ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଖାତିର କରୁଥିଲେ ଓ "ଦୟାର ସାଗର" ବୋଲି କହୁଥିଲେ ।

କିନ୍ତୁ ଏତେ ବଡ଼ଲୋକ ହୋଇ ମଧ୍ୟ ସେ ଅତି ସାଧାରଣ ଲୋକ ପରି ଚଳୁଥିଲେ । ସେ ଯୋତା ମାଡ଼୍ ନ ଥିଲେ କି କୁରୁତା ପିନ୍ଧୁ ନ ଥିଲେ । ହଳେ ଚଟି, ଖଣ୍ଡେ ପିନ୍ଧା ଓ ଖଣ୍ଡେ ଗୁଦର —ଏହାହିଁ ଥିଲା ତାଙ୍କର ବେଶ । ଏହି ବେଶରେ ସେ ଲାଟ୍ ସାହେବଙ୍କୁ ମଧ୍ୟ ଦେଖା କରୁଥିଲେ ।

ପିଲାଦିନେ ସେ ବଡ଼ କଷ୍ଟରେ ପାଠ ପଢ଼ିଥିଲେ । ତାଙ୍କ ବାପା କଲିକତାରେ ଗୋଟିଏ ଛୋଟିଆ ଚାକିରି କରିଥାନ୍ତି । କଲିକତାରେ ଗୋଟିଏ ବସାଘରେ ଈଶ୍ୱରଚନ୍ଦ୍ର, ତାଙ୍କର ଗୋଟିଏ ସାନଭାଇ ଓ ବାପା, ଏକାଠି ଥାନ୍ତି । ଈଶ୍ୱରଚନ୍ଦ୍ର, ଖୁବ୍ ସକାଳୁ ଉଠି ଗଙ୍ଗା ନଦୀରେ ଗାଧୋଇ ସେଇଆଡ଼୍ ବଜାରରୁ ମାଛ ଓ ପରିବାପତ୍ର କିଣି, ନିଜେ ବୋହି ଆଣନ୍ତି । ତା ପରେ ନିଜ ହାତରେ ରୋଷାଇ କରି ସକାଳେ ୯ଟା ବେଳକୁ ସମସ୍ତଙ୍କୁ ଖାଇବାକୁ ଦେଇ ପରେ ଖାଆନ୍ତି ଓ ଖାଇସାରି ସମସ୍ତଙ୍କ ବାସନ ମାଜି ଧୋଇ ସାରିଲା ପରେ ସାନଭାଇଙ୍କ ଧରି ପାଠ ପଢ଼ିବାକୁ ଯାନ୍ତି । ଗାଁରେ ତାଙ୍କ ମାଆ ଅରଟରେ ସୂତା କାଟି ତନ୍ତୀଦ୍ୱାରା ଯେଉଁ ମୋଟା ଲୁଗା ବୁଣାଇ ପଠାଇ ଦିଅନ୍ତି, ଦୁଇ ଭାଇଯାକ ସେହି ମୋଟା ଲୁଗାହିଁ ସବୁବେଳେ ପିନ୍ଧନ୍ତି । ଏତେ କଷ୍ଟରେ ପଢ଼ି ମଧ୍ୟ ଈଶ୍ୱରଚନ୍ଦ୍ର

ସବୁବେଳେ କ୍ଲାସରେ ପ୍ରଥମ ହୋଇ ବୃତ୍ତି ଓ ପୁରସ୍କାର ପାଉଥିଲେ । ଗରିବ ହେଲେ ମଧ୍ୟ ନିଜ ବୃତ୍ତିଟଙ୍କାରୁ ସେ କୌଣସି ସାଙ୍ଗର ବହି ନ ଥିଲେ ବହି, ଲୁଗା ନ ଥିଲେ ଲୁଗା, କିଣାଇ ଦେଉଥିଲେ ।

ଆଜିକାଲି ତୁମ୍ଭମାନଙ୍କ ମଧ୍ୟରେ କେତେଜଣ ଏପରି ଅଛ କହିଲ ?

ସବୁ ପିଲେ ଈଶ୍ୱରଚନ୍ଦ୍ରଙ୍କ ପରି ହେବା ଉଚିତ ।

ପ୍ରଶ୍ନ—୧ । ଈଶ୍ୱରଚନ୍ଦ୍ର "ବିଦ୍ୟାସାଗର" ଉପାଧି କାହିଁକି ପାଇଥିଲେ ?

୨ । ସେ କେଉଁ କେଉଁ ଭାଷାରେ ପଣ୍ଡିତ ହୋଇଥିଲେ ?

୩ । ଲାଟ୍‌ଙ୍କଠାରୁ ଆରମ୍ଭ କରି ସାଧାରଣ ଲୋକ ପର୍ଯ୍ୟନ୍ତ ତାଙ୍କୁ ଭଲ ପାଉଥିଲେ କାହିଁକି ?

୪ । ଈଶ୍ୱରଚନ୍ଦ୍ର ଛାତ୍ରଜୀବନ କିପରି କଟାଇଥିଲେ ?

---

## ଗୁଣ୍ଡୁଚି ମୂଷା

ଯିବେ ସେତୁ ବାନ୍ଧି ସମୁଦ୍ରରେ ରାମ
ଲଙ୍କାକୁ ସଇନ ଘେନି,
ଲଙ୍କା-ରାଜା ତାଙ୍କ ସୀତାଙ୍କୁ ନେଇଛି
ତା ସଙ୍ଗେ ଯୁଝିବେ ପୁଣି ।
କପି ସୈନ୍ୟମାନେ ବହି ଅଣୁଛନ୍ତି
ପାହାଡ଼ ପଥର ଟାଳି,
ନଳ ସେନାପତି ଚତୁର ବଢ଼ାଣୀ
ସେତୁ ବାନ୍ଧନ୍ତି ସଜାଡ଼ି ।

ରାମ ଲକ୍ଷ୍ମଣ ଭାଇ ଦୁଇ ଜଣ
ବୁଲି ଦେଖୁଛନ୍ତି କାମ,
ସହସ୍ର ସହସ୍ର ନର ବାନରଙ୍କ
କୁହାଟେ ପୂରଇ ଥାନ ।
ବଡ଼ ସାନ ଯାଏ ଯେ ଯେତେ ପାରନ୍ତି
ଆଣୁଛନ୍ତି ବୋହି ମାଥେ,
ଶିଳା ଗୋଡ଼ି ମାଟି ଗଛ ପତ୍ର ଲଟି
ପୁରୁଛନ୍ତି ଦେଖିଲେ ଗାତେ ।
ଅତଳ ସମୁଦ୍ର ପୋତ ହୋଇ ପୁଣି
ଫିଟିବ ପଥର ବାଟ,
ତା ଉପରେ ଯିବେ ଶ୍ରୀରାମ ଲକ୍ଷ୍ମଣ
ଧର ଅକଳନ ଥାଟ ।
ଦବା ଗାଡ଼ ଯେଣୁ ଲାଗିଅଛୁ କାମ
ପୋତାହୁଏ ସିନ୍ଧୁ ବାର,
ପାହାଡ଼ ପର୍ବତ ସଙ୍ଗେ ଲେଣ୍ଡା ହୁଏ
ଗଛ ଲତା ଗୋଡ଼ି ବାଲି ।
ସମୁଦ୍ର ତଟରେ ଗୁଣ୍ଡୁଚି ମୂଷାଏ
ଦେଖିଲେ ଏ ବନ୍ଧ ପଡା,
ଦେଖିଲ, ବଡ଼ରୁ ସାନଯାଏ ସବୁ
ଖଟିବାର କର ତଡା ।
ମନେ ସେ ଭାବିଲେ ହାୟ ! ମୁଁ କି ହୀନ
ଶ୍ରୀରାମଙ୍କ ସେବା କରି
ଏତେ ପ୍ରାଣୀ ଧନ୍ୟ ହେଉଛନ୍ତି ! ମୁଁ କି
କିଛି ନ ପାରିବି କରି ?

ଭାବି ଭାବି ଏକ ବୁଦ୍ଧି ସେ ପାଇଲା
ଧାଇଁଲା ସମୁଦ୍ର ଜଳେ,
ବୁଡ଼ି ତହିଁ ଓଦା କରି ତା ଶରୀର
ଲେଟିଗଲା ବାଲି ପରେ ।
ବାଲି ସର ସର ଦେହ ପୁଣି ନେଇ
ବନ୍ଧରେ ଅଇଲା ଝାଡ଼ି,
ପୁଣ ବୁଡ଼ି ଜଳେ ବାଲିରେ ସେ ଗଡ଼େ
ବନ୍ଧେ ଅସେ ବାଲି ଝାଡ଼ି ।
ଘଡ଼ି ଘଡ଼ି ଧରି ଏହିପରି କରି
ଗୁଣ୍ଡୁଚି ପରମ ଖୁସି,
ଏ କଥା ନଜର କଲେକ ଶ୍ରୀରାମ
ଦୂରେ ବାଲିବନ୍ଧେ ବସି ।
କୁତୁହଳେ ରାମ ପାଣି ପାଖେ ଅସି
ଡାକି ଗୁଣ୍ଡୁଚିକି ସ୍ନେହେ
ପଚାରିଲେ,'ଅହା କିପାଇଁ ପାଣିରେ
ଭିଜାଅ ଏ ଶ୍ରେଷ୍ଠ ଦେହେ ।
କିପାଇଁ ବା ବାଲି ଶେଷେ ଗଡ଼ି ପୁଣି
ଧାଉଁଛ ବନ୍ଧକୁ କ୍ଳେଶେ;
ପୁଣି ବୁଡ଼ୁ, ଅଛ ପୁଣି ଗଡ଼ୁ ଅଛ
ବିଶ୍ରାମ ନାହିଁ ନିମିଷେ ।'
ଶ୍ରେଷ୍ଠ ସେ ଗୁଣ୍ଡୁଚି ମୁଖ ନୋଇଁ କହେ
କହିଲା ବିନମ୍ର ତୁଣ୍ଡେ,
'ମହାତ୍ମନ ମୋତେ ଧନ୍ୟ କର ଦେଇ
ଶ୍ରୀପଦ ଧୂଳି ମୋ ମୁଣ୍ଡେ ।

ସ୍ୱାମୀଙ୍କର ସେବା କରି ହେଉଛନ୍ତି
ପବିତ୍ର ଜଗତ ଜନେ,
ମୁଁ କି ସ୍ୱାମୀଙ୍କର ସେବା ନ ପାରିବି
କରି, ଭାବିଲି ମୁଁ ମନେ ।
ସୈନ୍ୟ ସେନାପତି ସମୁଦ୍ରେ ବାନ୍ଧନ୍ତି
ପର୍ବତ ପାହାଡ଼ ଭରି,
ବିଧାତା ମୋତେ ତ ଦେଇନି ସେ ବଳ
କାହୁଁ ତା ପାରିବି କରି ।
ଛୋଟ ଦେହେ ମୋର ଯାହା ମୁଁ ପାରିବି
ତା ଦେଇ ସ୍ୱାମୀଙ୍କ ସେବା
କରିବି, ବୋଲି ମୁଁ ବାହାର କରୁଛି
ବନ୍ଧରେ ବାଲି ଫିଙ୍ଗିବା ।’

କଥା ଶୁଣି ତାର ବୀରମଣି ରାମ
ଧଇଲେ ତାହାଙ୍କୁ କୋଳ,

ଅତ୍ୟନ୍ତ ସ୍ନେହରେ ନିଜେ ତା ଦେହରେ
ଅଙ୍ଗୁଠିକି ଦେଲେ ବୁଲି ।
ସୀତାମଣିଙ୍କର ସ୍ନେହର ସେ ଚିହ୍ନ
ରହିଗଲା ଚିରକାଳ,
ଗୁଣ୍ଡୁଚି ଶରୀରେ ଏବେ ମଧ୍ୟ ଦିଶେ
ରାମଙ୍କ ଅଙ୍ଗୁଠି ଗାର ।
ସେ ଅଙ୍ଗୁଠି ଗାର ଦେଉଅଛି ଶିକ୍ଷା
ଏ କଥା ଜଗତ-ଜନେ,
ଛୋଟ ହୋଇ ମଧ୍ୟ ଭଲ କାମ କରି
ଯାଇପାରେ, ଥିଲେ ମନେ ।

ପ୍ରଶ୍ନ—୧ । ସମୁଦ୍ରରେ ବନ୍ଧ କରିବାରେ ବାନରୁ ବଡ଼ଯାଏ ଲାଗିଥିବାର ଦେଖି ଗୁଣ୍ଡୁଚିମୂଷା କ'ଣ ମନରେ ଭାବିଲା ?

୨ । ରାମଚନ୍ଦ୍ର ଗୁଣ୍ଡୁଚିକୁ ଡାକି କ'ଣ ପଚାରିଲେ ?

୩ । ଗୁଣ୍ଡୁଚି ରାମଙ୍କ କଥା ଶୁଣି କ'ଣ କହିଲା ?

୪ । ଗୁଣ୍ଡୁଚିମୂଷା ପିଠିରେ ଯେ ଅଙ୍ଗୁଠି ଦାଗ ଅଛି, ସେ ଲୋକମାନଙ୍କୁ କି ଶିକ୍ଷା ଦେଉଛି ?

୫ । ତଳେ କେତେଗୁଡ଼ିଏ ଶବ୍ଦ ଏବଂ ତାର ଅର୍ଥ ମିଶାମିଶି ହୋଇ ଦିଆଯାଇଅଛି । କିଏ କାହାର ଅର୍ଥ ହେବ ବାଛି ଦିଅ ।

ସେତୁ, ପ୍ରଧାନ, ନର, ପାଣି, ମାଙ୍କଡ଼ ଶିଳା, ବାନର, ପଥର, ଥାଟ, ବାରି, ସୈନ୍ୟ, ମନୁଷ୍ୟ, ସମୁଦ୍ର, ବଡ଼, ବନ୍ଧ ।

# ଆମର ଗୃହପୋଡ଼ିଆ ବନ୍ଧୁ

## ( ୧ )

### ବଲ୍‌ଗା ହରଣ

ଆମ ଦେଶରେ ପ୍ରାୟ ଦୁଇମାସ ଶୀତ ହୁଏ । ସେଇ ଦୁଇ ମାସରେ ଆମେ ବଡ଼ ହଇରାଣ ହେଉଁ । ଏତେ ଶୀତ ହୁଏ ଯେ, ଯେତେ ଘୋଡ଼ାଇ ହେଲେ ମଧ୍ୟ, ଦେହ ଥରୁଥାଏ, ରାତ ହେଲେ ଘରୁ ବାହାର ହୁଏନାହିଁ । ପାଣି ଏତେ ଥଣ୍ଡା ହୁଏ ଯେ ପାଟିକି ନେଲେ ଦାନ୍ତ କୋଳ ମାରିଯାଏ ଓ ଗାଧୋଇବାକୁ ଇଚ୍ଛା ହୁଏ ନାହିଁ । ଦୁଇ ମାସରେ ତ ଏପରି କଷ୍ଟ, ଯେଉଁସ୍ଥାନରେ ବର୍ଷରେ ନଅ ମାସ ଶୀତ, ସେଠାରେ କିପରି କଷ୍ଟ ହେଉଥିବ ଭାବିଲ ? ପୁଣି ଯେଉଁ ଦୁଇମାସ ଶୀତ ହୁଏ, ସେ ଶୀତ ଆମକୁ ଯିନା ଖୁବ୍ ଜଣାପଡ଼େ, ପ୍ରକୃତରେ କିନ୍ତୁ ତାହା ବେଶୀ ଶୀତ ନୁହେଁ । ଆମେ ଯେତକ ଉତ୍ତରକୁ ଯିବା ବା ପର୍ବତର ଉପରକୁ ଉଠିବା, ଶୀତ ସେତକ ବେଶୀ ହେବ । ହିମାଳୟ ବୋଲି ଆମଦେଶର ଉତ୍ତରରେ ଗୋଟିଏ ପର୍ବତ ଅଛି, ସେ ପର୍ବତ ଖୁବ୍ ଉଚ୍ଚାଥିବାରୁ ତାହାର ଶିଖରେ ବର୍ଷସାରା ବରଫ ଜମି ରହିଥାଏ । ତା' ଉପରକୁ ଯେଉଁ ଦେଶସବୁ ଅଛି, ସେ ଦେଶମାନଙ୍କରେ ଶୀତକଥା ଆଉ କହ ନାହିଁ । ବର୍ଷର ନଅମାସ କାଳ ଗୃହଆଡ଼େ ବରଫ ଜମି ରହେ, ନଈନାଳର ପାଣି ଶୀତରେ ପଥର ପରି ଟାଣ ହୋଇଯାଏ । ଲୋକେ ତା ଉପରେ ଯିବା ଆସିବା କରନ୍ତି । ବରଫରେ ଗଛ ବୃକ୍ଷ କିଛି ହୁଏ ନାହିଁ । ଶୀତ ଶେଷ ହେଲେ ବସନ୍ତ ଆସେ । ତଳମାସ ଟିକିଏ ଖରା ପଡ଼ ପୁଣି ଯେଉଁ ଶୀତକୁ ସେହି ଶୀତ ହୁଏ । ଖରା ତଳମାସରେ ବରଫ ତରଳ କେଉଁଠି

କେଉଁଠି ଗଛ, ଲତା ଓ ଘାସସବୁ ଜନ୍ମେ ନାହିଁ । ଗୋଟେ ପ୍ରକାର ଶିଉଳ ମଧ୍ୟ ଉଠେ । ଏହି ଘାସ ଶିଉଳ ଖାଇ ସେ ଦେଶମାନଙ୍କରେ ବଲ୍ଗା ହରଣ ବୋଲି ଏକ ପ୍ରକାର ହରଣ ବଞ୍ଚନ୍ତି । ସେ ହରଣସବୁ ଆମଦେଶର ଅନ୍ୟ ହରଣପରି । ସେମାନଙ୍କର କେନା କେନା ଶିଙ୍ଗ ଓ ସେମାନେ ଦେଖିବାକୁ ଖୁବ୍ ଉଚ୍ଚ । ଏ ଜନ୍ତୁଟି ନ ଥିଲେ ସେ ଦେଶରେ ମନୁଷ୍ୟ ବଞ୍ଚି ପାରନ୍ତେ ନାହିଁ । ସେଠାର ଲୋକେ ବଲ୍ଗାର ଦୁଧ ଓ ମାଂସ ଖାଇ ବଞ୍ଚନ୍ତି । ବଲ୍ଗାର ଲୋମ ଓ ଚମଡ଼ାରେ ସେମାନେ ଲୁଗାପଟା ତିଆରି କରି ଶୀତରୁ ରକ୍ଷାପାନ୍ତି । ବଲ୍ଗା ଚମଡ଼ାରେ ତାଙ୍କର ଉଠାଘର ସବୁ ତିଆରି ହୁଏ ଏବଂ ଏଠୁ ସେଠିକି ଯେତେବେଳେ ଯୁଆଡ଼େ ଯିବାକୁ ଇଚ୍ଛା କରିବେ, ବଲ୍ଗା ହରଣ ତାଙ୍କୁ ଗାଡ଼ିରେ ଟାଣି ନେଇଯିବ । ଆମ ଦେଶରେ ହରଣ କେବଳ ବଣରେ ରହନ୍ତି ଓ ଲୋକେ



( ବଲ୍ଗାହରଣଟଣା ଗାଡ଼ି )

ଶିକାର କରି ଖାଲି ତାର ମାଂସ ଖାନ୍ତି । କିନ୍ତୁ ସେ ଦେଶରେ ବଲ୍ଗା ହରଣ ମନୁଷ୍ୟକୁ ଦୁଧ ଦିଏ, ମାଂସ ଦିଏ, ଲୁଗାପଟା

ଢଏ, ଘର ଢଏ, ପୁଣି ଏଠି ସେଠିକି ବୋହୁନଏ । ଏପରି ଉପକାରୀ ପ୍ରାଣୀ କିଏ କେବେ ଦେଖିଛ ?

ବଲ୍ଗା ହରିଣ ଯେଉଁ ଗାଡ଼ି ଟାଣେ, ତାହା ଆମ ଗାଡ଼ି ଭଳିଆ ନୁହେଁ । ସେ ଗାଡ଼ିର ଚକ ନାହିଁ । କେତେଖଣ୍ଡ ପଟା ଯୋଡ଼ି ଦେଲେ ଗାଡ଼ି ହେଲା । ବଲ୍ଗାର ଶିଙ୍ଘରେ ଦଉଡ଼ି ଲଗେଇ ଦେଇ ଗାଡ଼ିରେ ସେହି ଦଉଡ଼ିକୁ ବାନ୍ଧି ଦିଅନ୍ତି । ମନୁଷ୍ୟ ଗାଡ଼ିରେ ବସିଲେ ବଲ୍ଗା ତାକୁ ଭିଡ଼ି ଭିଡ଼ି ନିଏ ।

ବଲ୍ଗା ଘାସ ଖାଇ ବଞ୍ଚେ । ବସନ୍ତକାଳରେ ଯେଉଁ ଘାସ ଉଠେ, ତାହା ସେ ପ୍ରଚୁର ଖାଏ । ଶୀତ ଆସିଲେ ଏହି ଘାସ ବା ଶିଉଳି ଉପରେ ବରଫ ପଡ଼ିଯାଏ । ବଲ୍ଗା ଅନେକ ସମୟରେ ନିଜ ଶିଙ୍ଘ ଓ ଗୋଡ଼ରେ ବରଫ ତାଡ଼ି ପୋତି ହୋଇଥିବା ଶିଉଳିକୁ ଖୋଜି ଖୋଜି ଖାଏ ।

ପ୍ରଶ୍ନ—୧ । କେଉଁ ଦେଶରେ ବର୍ଷରେ ନଅମାସ ଶୀତ ହୁଏ ?
୨ । ବଲ୍ଗା ହରିଣ ଦେଖିବାକୁ କିପରି ?
୩ । ବଲ୍ଗା ଶୀତପ୍ରଧାନ ଦେଶର ଲୋକମାନଙ୍କର କି ଉପକାର କରେ ?
୪ । ବଲ୍ଗା ହରିଣ ଶୀତଦିନେ କ'ଣ ଖାଏ ?
୫ । ପାଣି. ପଥର ପରି ହେଲେ ତାକୁ କ'ଣ କହନ୍ତି ?
୬ । ଶୀତଋତୁ ବିଷୟରେ ଗୋଟିଏ ରଚନା ଲେଖ ।

---

# ଆମର ଚାରଗୋଡ଼ିଆ ବନ୍ଧୁ

## ( ୨ )

### ସେଣ୍ଟ୍ ବର୍ଣ୍ଣାଡ୍ କୁକୁର

ଆମର ହିମାଳୟ ପର୍ବତ ପରି ସାହେବମାନଙ୍କ ଦେଶରେ ଗୋଟିଏ ବଡ଼ ପର୍ବତ ଅଛି । ତାର ନାଁ ଆଲ୍‌ପ୍‌ସ୍ । ଏହି ଆଲ୍‌ପ୍‌ସ୍ ହିମାଳୟ ପରି ବଡ଼ ନ ହେଲେ କଅଣ ହେଲା, ଏତେ ଉଚ୍ଚା ଯେ ସେଠି ମଧ୍ୟ ସବୁବେଳେ ବରଫ ଜମି ରହେ । ସେହି ପର୍ବତରେ ଏପଟରୁ ସେପଟ ଯିବାକୁ ଗୋଟିଏ ଗୋଟିଏ ଘାଟି ଅଛି । ଖରାଦିନେ ଏହି ଘାଟିରେ ଲୋକେ ଯିବା ଆସିବା କରି ପାରନ୍ତି । କାରଣ ଖରା-ଦିନେ ବରଫ ନ ଥାଏ । କିନ୍ତୁ ଶୀତଦିନେ ଗୁହଳିଆ ବରଫ ଜମିଥାଏ । ଘାଟିରେ ମଧ୍ୟ ବରଫ ପଡ଼ି ଲୋକେ ଯିବା ଆସିବାକୁ ଭାରି ଅସୁବିଧା ହୁଏ । ଯଦି କୌଣସି ବାଟୋଇ ଚାଲିବା ଯାଏ, ତେବେ ଅନେକ ସମୟରେ ବରଫ ଉପରେ ଗୁଳି ଗୁଳି ତାର ହାତ ଗୋଡ଼ ଟାଣି ପାରି ସେ ତଳେ ପଡ଼ିଯାଏ । ତୁମେ କୁଅପଥର ହାତରେ ଧରିଲେ, ହାତ କମାରି କୋଳ ମାରିଯାଏ ଜାଣିଥିବ । ଯେଉଁଠାରେ ଗୁହଳିଆ ବରଫ, ସେଠାରେ କୋଣ କୋଣ ବାଟ ଗୁଳିଯିବାକୁ କି କଷ୍ଟ, ବୁଝି ପାରୁଥିବ ।

ଆଲ୍‌ପ୍‌ସ୍ ଉପରେ ଯେତେ ଘାଟି ଅଛି, ସେଣ୍ଟ୍ ବର୍ଣ୍ଣାଡ୍ ଘାଟି ସେଥିରୁ ଗୋଟିଏ । ବହୁକାଳ ପୂର୍ବେ ସେହି ଘାଟି ଉପରେ ସେଣ୍ଟ୍ ବର୍ଣ୍ଣାଡ୍ ବୋଲି ଜଣେ ଖ୍ରୀଷ୍ଟିୟାନ୍ ବାବାଜୀ ଗୋଟିଏ ମଠ କରି ରହିଥିଲେ । ତାଙ୍କର ନାମ ଅନୁସାରେ ସେ ଘାଟିର ନାମ

ସେଣ୍ଟ୍-ବର୍ଣ୍ଣାର୍ଡ୍ ହୋଇଅଛି । ଶୀତଦିନେ ଲୋକେ ବରଫରେ କଷ୍ଟ ପାଇଲାବେଳେ ସେହି ବାବାଜୀ ତାଙ୍କର ପୋଷା କୁକୁରଙ୍କ-ଦ୍ୱାରା ଲୋକଙ୍କୁ କଷ୍ଟରୁ ଉଦ୍ଧାର କରୁଥିଲେ । ବାବାଜୀ କେତେଦିନୁ ମରିଗଲେଣି, କିନ୍ତୁ ତାଙ୍କ ମଠ ଏବେ ମଧ୍ୟ ସେଠାରେ ଅଛି ଓ ଏବେ ମଧ୍ୟ ବାବାଜୀମାନେ ସେହି କୁକୁରମାନଙ୍କଦ୍ୱାରା ଲୋକଙ୍କୁ କଷ୍ଟରୁ ରକ୍ଷା କରୁଛନ୍ତି । ଏହି କୁକୁରମାନଙ୍କୁ ସେଣ୍ଟ୍-ବର୍ଣ୍ଣାର୍ଡ୍ କୁକୁର କହନ୍ତି । ଏମାନଙ୍କୁ ମଠର ବାବାଜୀମାନେ ଏପରି ଶିକ୍ଷା ଦେଇଥାନ୍ତି ଯେ, ସେମାନେ ରାତିରେ ଓ ଦିନରେ ସେହି ପର୍ବତରେ ବୁଲି କଷ୍ଟ ପାଉଥିବା ବାଟୋଇମାନଙ୍କୁ ଖୋଜି ତାଙ୍କର ସେବା



କରନ୍ତି । ବାଟୋଇ ଯଦି ଚାଲି ପାରୁଥିବ, ତେବେ ସେମାନେ ଆଗେ ଆଗେ ଚାଲି ତାଙ୍କୁ ମଠକୁ ନେଇଯିବେ । ଯଦି ବାଟୋଇ ହାଲିଆ ଓ କାଲୁଆ ହୋଇ ତଳେ ପଡ଼ି ଯାଇଥିବ, ତେବେ ପ୍ରଥମେ ସେମାନେ ତାର ହାତ ଗୋଡ଼ ତାଙ୍କ ଉଷ୍ମ ଜିଭରେ ଚାଟି ଚାଟି ସେଗୁଡ଼ିକ ଗରମ କରିବେ । ଏଥିରେ ଲୋକେ ଦମ୍ଭ ପାଇ ଉଠିଲେ, ସେମାନେ ନିଜ ବେକରେ ବନ୍ଧା ହୋଇଥିବା ଗରମ ଗୁ ଓ ରୁଟି ଖାଇବାକୁ ଦେବେ । ସେତକ ଖାଇ ଲୋକଟି ଚାଲି ପାରିଲେ ତ ଭଲ କଥା, ନ ହେଲେ ସେମାନେ ଏପରି ଭାବରେ ଭୁକିବେ ଯେ, ସଙ୍ଗେ ସଙ୍ଗେ ମଠର ବାବାଜୀମାନେ ଆସି ଲୋକଟିକୁ ଉଠାଇ ମଠକୁ ନେଇଯିବେ । ଏହିପରି ପ୍ରତିବର୍ଷ ଅନେକ ବାଟୋଇ ସେଣ୍ଟ୍ ବର୍ଣ୍ଣାର୍ଡ୍ କୁକୁରମାନଙ୍କଦ୍ୱାରା ଉପକୃତ ହୁଅନ୍ତି । କୁକୁର ବଡ଼ ଚାଲାକ୍ ପ୍ରାଣୀ । ତାକୁ ଶିଖେଇଲେ ସେ

ଅନେକ କଥା ଶିଖିବ ଓ ସ୍ନେହ କଲେ ଆମପାଇଁ ପ୍ରାଣ ଦେଇଦେବ ।

ଏମିତି ଅନେକ ଗୃହପାଳିତ ଜୀବ ଆମର ଉପକାର କରନ୍ତି । କିନ୍ତୁ ତାଙ୍କ ଉପକାର ଆମେ ଜାଣି ନ ପାରି ତାଙ୍କୁ ଅନେକ ସମୟରେ ବଡ଼ କଷ୍ଟ ଦେଉଁ । ଆମ ଦେଶରେ ଗାଈଗୋରୁ ଖାଇବାକୁ ନ ପାଇବାରୁ ତାଙ୍କ ଦେହରୁ ହାଡ଼ ବାହାରି ପଡ଼ୁଥାଏ । ତାଙ୍କ ଖାଇବାକଥା ଆମେ ଆଦୌ ବୁଝୁ ନାହୁଁ । ଗୋରୁଗାଈଙ୍କ ଯୋଗେ ଆମେ ଖାଇବାକୁ ପାଉଛୁଁ । ସେମାନେ ଭୋକରେ ରହିଲେ ଆମର ବଡ଼ ପାପ ହେବ । ଅନେକ ସମୟରେ ସେମାନଙ୍କୁ ଲୋକେ ବାଡ଼ିରେ ବାଡ଼ାନ୍ତି । ଏହାଦ୍ୱାରା ସେମାନଙ୍କୁ ଭାରି କାଟେ । ଏହା କରିବା ଆଦୌ ଉଚିତ ନୁହେ ।

ପ୍ରଶ୍ନ—୧ । କୁକୁର ବଡ଼ ଗୁଣିଆ ପ୍ରାଣୀ । ତାକୁ ଶିଖେଇଲେ ସେ ଅନେକ କଥା ଶିଖିବ ଓ ସ୍ନେହ କଲେ ଆମପାଇଁ ପ୍ରାଣ ଦେବ, ଏହା କିପରି ଜାଣିଲ ?

୨ । ଘରେ ପୋଷା ହୋଇଥିବା ଉପକାରୀ ପ୍ରାଣୀମାନଙ୍କ ପ୍ରତି କିପରି ବ୍ୟବହାର କରିବା ଉଚିତ ?

୩ । ଆମ୍ଭମାନଙ୍କ ଗ୍ରାମରେ ଯେଉଁ କୁକୁର ଦେଖାଯାନ୍ତି, ସେମାନଙ୍କ ବିଷୟରେ ଗୋଟିଏ ରଚନା ଲେଖ ।

୪ । ଶୂନ୍ୟସ୍ଥାନ ପୂରଣ କରଃ—

ହାତରେ—ଧରିଲେ କୋଳମାରିଯାଏ । ଦେହ—ରେ ଥରିଯିବ । ମଠରେ—ବସିଅଛନ୍ତି । — ହମ୍ବାଳୁ ଅଛି ।

———

# ରାତିର ସ୍ୱପ୍ନ

ଖରା ଦିନ ରାତି ଜୋଛନା ପଡ଼ୁଛି
ଅଗଣାରେ ପଟି ପାରି,
ବାପା ମୋତେ କୋଳେ ଶୁଆଇଲେ ଥରେ,
ନିଦରେ ମୁଁ ହେଲି ଢଳି ।

ଜୋଛନା ରାତିରେ ମେଲି ଅଗଣାରେ
ବାପା କୋଳେ ଶୋଇପଡ଼ି,
ଯେ ସବୁ ସପନ ଦେଖିଲି ସେ ଦିନ,
ରହିଛି ମନରେ ଜଡ଼ି ।

ଦେଖିଲି ସପନେ ଆମ ଘର କଣେ
ବସିଛି ମୁଁ ଅପା କତି,
ଏକାଳେ ଆଇଲା କେଉଁଠି ସେ ଥିଲା
ଦନ୍ତାଳ ଏକ ହାତୀ ।

କହିଲା ସେ ହାତୀ ଚଢ଼ ମୋର ପିଠେ,
ନେଇଯିବି ପରବାସ
ଦେଖିବ ଆଖିରେ, ଖାଇବ ପାଟିରେ
ଯେତେ ଥିବ ମନେ ଆଶ ।

ଏକଥା ସେ କହି ଶୁଣ୍ଢ ତା ବଢ଼ାଇ
ଚଢ଼ାଇଲା ପିଠି ପରେ,
ଆମେ ଦୁହେଁଯାକ ଭୟେ ଧକ ଧକ
ବସିଥାଉଁ ଥରଥରେ ।

ଦେଖୁଁ ଦେଖୁଁ ହାତୀ ଝରକାରେ ପଶି
ଦାଣ୍ଡକୁ ବାହାର ହେଲା,
ଗୃହୁଁ ଗୃହୁଁ ପୁଣ ଆମ ଦାଣ୍ଡ ଗୋଟା
କ୍ଷଣକେ ବଦଳି ଗଲା ।
ବଦଳି ଯାଇଛି ନାହିଁ ଆଉ କିଛି
ପୁରୁବ ଦୁଆର ଘର,
ଆମଘର-ଯାକ ଢୋଟା ହୋଇଅଛି
ଗଛ ଲଟା ବନସ୍ତର ।
ରଙ୍ଗ କନିଅର ଦେଖି ଭର ଭର
ତୋଳିବାକୁ ହେଲା ମନ—
ଫୁଲ ମୁଁ ତୋଳୁଛି, ଅପାକୁ ଦେଉଛି
ହାତୀ ହେଲା ଅନ୍ତର୍ଦ୍ଧାନ ।
ହାତୀ କାହିଁ ଗଲା ଧର ବେଳା ଗଲା
ହୋଇ ଛୁଡ଼ା ପଗ୍ରୁରୁଁ,
କନିଅର ଗଛ ହୋଇ ଘୋଡ଼ାମାଛ
ପହଁର ଆସିଲା ପଛୁଁ ।
ପାଦତଳ ମାଟି ପାଣି ହେଲା ଫାଟି
ଘୋଡ଼ାମାଛ ଡାକେ ଆସ,
କାନ୍ଦୁ କାନ୍ଦୁ ଘୋଡ଼ା ପିଠି ଉପରେ ଥୋଇ
ପହଁରଇ ଚଉପାଶ ।
"ବୁଡ଼ିଯିବୁଁ ଆମେ ବୁଡ଼ିଯିବୁଁ ଆମେ
କାନ୍ଦିବେ ଯେ ବାପା ବୋଉ",
ପକାଇଲୁଁ ଡକା ହୋଇଣ ଛାଟକା
ନ ସହି ଘୋଡ଼ାର ଦାଉ ।

ଅପା ଧଇ ମୋତେ ଲହ ଟାଳେ ଦେତେ
ପୋଛୁଲି ମୁଁ ଅପା ଲହ,
ପୋଛୁ ପୋଛୁ ଦେଖି ଶ୍ୱେତ ହଂସ ଏକ
ହୋଇ ଉଡ଼େ ଝଟ ମୁହିଁ ।
ଉଠି ଉଠି ମେଘେ ହଂସ ବାୟୁ-ବେଗେ
ଉଡ଼ୁଥାଏ ଆକାଶରେ,
ଶୀତଳ ପବନ ହୋଇ ସନ ସନ
ବାଜୁଥାଏ କାନ ପରେ ।
ମିଠ ମିଠ ହସି ତାରା, ମେଘ, ଶଶୀ
ଡାକୁଥାନ୍ତି—ଏଣେ ଆସ,
ଖାଇବ ପିଇବ, ହସିବ ଖେଳିବ
ପୂରିବ ସକଳ ଆଶ ।
"ନାହିଁ, ନାହିଁ, ନାହିଁ, କିଛିଲୋଡ଼ା ନାହିଁ"
କହିଲି ମୁଁ ଥର ଥର,
ବାପା ବୋଉ ଛାଡ଼ି ହାଡି—ହଂସ ଚଢ଼ି
କି ଶିଖି ହେବ ଅମର ।
ଏ ହଂସ ଭାଇଟି ଛଡ଼ା ଆମକୁଟି
ଆମର କୁଡ଼ିଆ ଘରେ,
କହୁ କହୁ ମତେ ସବୁ ହେଲା ଫତେ
ସବୁ ଶେଷ କ୍ଷଣକରେ ।
ଉଠେ ମୁଁ ଦେଖିଲି ଜକେ ଶୋଇଥିଲି
ଅପା ଉଠାଉଛି ମୋତେ,
ମାମୁଁ ଆଣିଛନ୍ତି ମାଖେ ଥୋଇଛନ୍ତି
ରବରର ହଂସ ଗୋଟେ ।

ପ୍ରଶ୍ନ—୧ । ଶିଶୁଟି କପରି ଅବସ୍ଥାରେ ଥାଇ ସ୍ୱପ୍ନ ଦେଖିଲା ?

୨ । ସେ ସ୍ୱପ୍ନରେ ହାତୀ ଉପରେ ଚଢ଼ିଥିବାବେଳେ ତାର ଘର ଦୁଆର କପରି ଦେଖାଗଲା ?

୩ । ଶିଶୁ ନୂଆ ନୂଆ ସ୍ଥାନ ଦେଖି ମନ ବୋଧ ହେଲାପରେ ତାର ମନ କ'ଣ ହୁଏ ?

୪ । ଜୋଛନା, ବନସ୍ତ, ତାଟକା, ଠେଙ୍ଗେ, ଶଣୀ, ଫଟେ—ଏଗୁଡ଼ିକର ଅର୍ଥ କହ ।

---

## ଟିକଟ-ଦୂତ

ପୂର୍ବେ ଘରର କେହି ଲୋକ ବା ସାଙ୍ଗସାଥୀ କେହି ପରବାସ ଗଲେ ତା'ର ଖବର ପାଇବା ବଡ଼ କଷ୍ଟକର ବିଷୟ ଥିଲା । ଖବର ପାଇବାକୁ ହେଲେ ଜଣେ ଲୋକକୁ ଚୂଡ଼ା, ଗୁଡ଼ଜଳ, ଟଙ୍କା, ପଇସା ଦେଇ ପଠାଇବାକୁ ହେଉଥିଲା । ସେଥିରେ ବହୁତ ଖର୍ଚ୍ଚ । ବାଟରେ ପୁଣି ଚୋର ଡକେଇତର ଭୟ । ତେଣୁ ଲୋକେ ପୂର୍ବେ ବେଶୀ ବିଦେଶକୁ ଯାଉ ନ ଥିଲେ । ନିଜ ନିଜ ଗାଁମାନଙ୍କରେ ଲୋକଙ୍କ ଜୀବନ କଟି ଯାଉଥିଲା । ଯିଏ ବା ତୀର୍ଥଯାତ୍ରା କରୁଥିଲେ, ସେ ଫେରି ଆସିବେ ବୋଲି ଭାବୁ ନ ଥିଲେ । ତେଣୁ ସାଧାରଣତଃ ବୁଢ଼ାବୁଢ଼ୀ ହେଲେ ଲୋକ ତୀର୍ଥ କରି ଯାଉଥିଲେ, ବାଟରେ ଯଦି ମରି ହଜି ଯାନ୍ତି, ତେବେ କିଛି କ୍ଷତି ନାହିଁ; ଘରେ ମରନ୍ତେ ତୀର୍ଥରେ ମରିବେ; କ୍ଷତି କଣ ? କେହି ତୀର୍ଥଯାତ୍ରା କଲେ ଘରେ କାନ୍ଦ ବୋବାଳି ପଡ଼ୁଥିଲା ।

କିନ୍ତୁ ଏବେ ତ ସେସବୁ ଆଉ ନାହିଁ, ଏବେ ଗାଁର ଗରିବ ମୂଲିଆମାନେ ରେଙ୍ଗୁନ୍, ଆସାମ, କଲିକତା ପ୍ରଭୃତି ବୁଲି ଆସୁଛନ୍ତି । ତା' ଛଡ଼ା ଶିକ୍ଷିତ ଲୋକେ ପୃଥିବୀଯାକ ବୁଲି ଘରକୁ ଫେରି ଆସୁଛନ୍ତି । ରେଲ ଓ ଜାହାଜ ଯୋଗେ ଯିବା ଆସିବା ଭାରି ସୁବିଧା ହୋଇଛି । ଆମ ଲୋକେ ପୃଥିବୀର ଯେଉଁଠି ଥିଲେ ମଧ୍ୟ ଆମେ ତାଙ୍କଠାରୁ ଅକ୍ଳେଶରେ ତାର ଖବର ପାଇ ପାରୁଛେ । କାରଣ ଖବର ନିଅ ଆଣ କରିବା ଲାଗି ଏବେ ଗୁରୁଅଡ଼େ ପ୍ରତିଦିନ ଦୂତ ସବୁ ଧାଉଁଛନ୍ତି । ସେ ଦୂତର ନାମ ଟିକଟ-ଦୂତ । ତାର ଖର୍ଚ୍ଚ ମୋଟେ ଛଅ ପଇସା କିମ୍ବା ଅଠ ପଇସା, ବେଶୀ ଓଜନର ଚିଠି ହେଲେ ଆଉ କିଛି ବେଶୀ ପଡ଼ିବ ।

ମନେକର ତୁମର ଜଣେ ଲୋକ କଲିକତାରେ ଅଛି । ତା ପାଖକୁ ତୁମର ଖବର ଦେବା ଦରକାର । ସେଥିପାଇଁ ତୁମେ ଗୋଟିଏ ଲୋକଙ୍କୁ ଚୁଡ଼ା, ଗୁଡ଼ଳ, ଟଙ୍କା ପଇସା ଦେଇ ତା ପାଖକୁ ପଠାଇବା ଦରକାର ନାହିଁ । ତୁମ ନିକଟରେ ଥିବା ଡାକଘରୁ ଅଠ ପଇସାର ଟିକଟ ଆଣି ଯାହା ଲେଖିବାର କଥା, କାଗଜ ଖଣ୍ଡିକରେ ଲେଖି ତାକୁ ଲଫାଫାରେ ବନ୍ଦ କରି ଓ ଲଫାଫା ଉପରେ ତମ ଲୋକର ନାଁ, କଲିକତାର କେଉଁ ଗଳିରେ, କେତେ ନମ୍ବର ଘରେ ଥାଆନ୍ତି ଲେଖି, ଡାକ ବାକ୍ସରେ ପକେଇ ଦିଅ । ବେଶ୍, ଆଉ କିଛି ଦରକାର ନାହିଁ—ଟିକଟ-ଦୂତ ଠିକ୍ ସମୟରେ ତୁମ ଚିଠି ତୁମ ଲୋକ ପାଖରେ ହାଜର କରିଦେବ ।

ଟିକଟ-ଦୂତ ଏହା କିପରି କରେ ? ମନେ କର, ତୁମ ଡାକଘରେ ତୁମେ ଯେଉଁଦିନ ଚିଠି ପକେଇଲ, ସେ ଦିନ କେତେ ଲୋକ କେତେ ଆଡ଼କୁ ଚିଠି ଦେଲେ । ସବୁ ଚିଠିରେ ତୁମ ଡାକଘରର ମୋହର ଟିକଟ ଉପରେ ବସି, ଗୋଟାଏ

ମୁଣାରେ ପଶିବ ! ମୋହର ମସ୍ତ ହେବାର ଅର୍ଥ, ତୁମେ ଯେଉଁ ଟିକଟ ବ୍ୟବହାର କଲ, ତାକୁ ଯେପରି ଆଉ କେହି ବ୍ୟବହାର କରି ପାରିବେ ନାହିଁ । କାରଣ ଗୋଟାଏ ଟିକଟ ଯେବେ ବହୁତ ଲୋକ ବ୍ୟବହାର କରନ୍ତେ, ତେବେ ଟିକଟ ଅଧୌ ବିକ୍ରୀ ହୁଅନ୍ତା ନାହିଁ । ଟିକଟ ବିକ୍ରୀ ନ ହେଲେ ଡାକଘରେ ଯେଉଁ ଲୋକ କାମ କରନ୍ତି, ସେ ଦରମା ପାଇବେ ନାହିଁ କି ତମ ପାଇଁ ତମ ଚିଠି ବୋହିବା କାମ କରିବେ ନାହିଁ । ଏହି ଯେଉଁ ଟିକଟ ବିକ୍ରୀ ହୁଏ.



ସେହିପଇସାରୁ ସେମାନେ ଦରମା ପାଇ ଅମ୍ଭମାନଙ୍କ ପାଇଁ କାମ କରନ୍ତି । ଡାକଘରେ ଯେତେ ଚିଠି, ସେ ସବୁକୁ ଗୋଟାଏ ମୁଣାରେ ଭର୍ତ୍ତି କରି ଡାକ ବାକ୍ସରେ ଝୁଲେଇ ଡାକ ହରକରା ରେଲ ଷ୍ଟେସନକୁ ଗ୍ଲଲିବ । ରେଲଗାଡ଼ି ନାନା ଅଞ୍ଚଳକୁ ଯାଏ । ଉତ୍ତରକୁ ଯେଉଁ ଗାଡ଼ି ଯାଏ, ସେ ଦକ୍ଷିଣ ଜିଲାର ଚିଠିସବୁ କାହିଁକି ନେବ ? ତେଣୁ ରେଲରେ ଦିବା ପୂର୍ବରୁ ଚିଠିସବୁ ବଛା ହୁଏ । କଲିକତା ଅଞ୍ଚଳର ଯେତେ ଚିଠି, ସେ ସବୁ କଲିକତା ଯାଉଥିବା ଗାଡ଼ିରେ ଲଦି ଦିଆଯାଏ । ପୁଣି ବାଟରେ ତ ଅନେକ ଜାଗାରେ ଚିଠି

ଦେବାକୁ ପଡ଼ିବ । ତେଣୁ ଗାଡ଼ି ଯେଉଁ ଯେଉଁ ଷ୍ଟେସନ ବାଟ ଦେଇ ଯିବ, ସେହି ସେହି ଜାଗାର ଯେତେ ଚିଠି ତାହା ଅଲଗା ଅଲଗା ମୁଣାରେ ପୂରି ହୋଇ ବନ୍ଧା ହୋଇଥାଏ । ଗଲାବେଳେ ବାଟରେ ଯେଉଁ ଷ୍ଟେସନର ଯେଉଁ ଚିଠିମୁଣା ସେଠାରେ ତାକୁ ଦେଇ ଗାଡ଼ି ଶେଷରେ କଲିକତାର ଚିଠି ଧରି କଲିକତାରେ ପହଞ୍ଚିବ । ସେଠାରେ ପୁଣି ଚିଠି ବଣ୍ଟା ହେବ । କାରଣ କଲିକତାଟି ଖୁବ୍ ବଡ଼ ସହର, ବହୁତ ଗଳି, ଲକ୍ଷ ଲକ୍ଷ ଘର । ତେଣୁ ଗଳି, ସାହି ନାମ ଅନୁସାରେ ଚିଠି ସବୁ ବଣ୍ଟାଯାଏ । ଏହାପରେ ଭିନ୍ନ ଭିନ୍ନ ଗଳି-ପାଇଁ ଭିନ୍ନ ଭିନ୍ନ ମୁଣା ହେବ । ଗୋଟିଏ ଗୋଟିଏ ଗଳିର ମୁଣା ଧରି ଗୋଟିଏ ଗୋଟିଏ ଲୋକ ଚିଠି ବାଣ୍ଟିବାକୁ ବାହାରି ପଡ଼ିବେ । ତୁମର ନିଜ ଲୋକଟି ଯେଉଁ ଗଳିରେ ଥିବ, ସେ ଗଳି ବା ସାହିର ଡାକ ପିଅନ ଚିଠିଉପରେ ଲେଖାଥିବା ଘରନମ୍ବର ଦେଖି, ସେଇ ଘରଦୁଆରେ ଡାକି, ତୁମ ଲୋକ ହାତକୁ ଚିଠିଟି ବଢ଼ାଇ ଦେବେ । ଅଠ ପଇସାର ଟିକଟରେ ଏତକ କାମ କରାଯାଇ ପାରୁଛି ।

ପ୍ରଶ୍ନ—୧ । ଆଗକାଳରେ କେହି ତୀର୍ଥଯାତ୍ରାକୁ ଗଲେ ଘରର କାହିଁକି ବୋବାଳି ପଡ଼ୁଥିଲା କାହିଁକି ?

୨ । ଟିକଟ କପରି ଦୂତର କାର୍ଯ୍ୟ କରୁଅଛି, କୁହ ।

୩ । ଟିକଟ ଉପରେ ମୋହର ଦିଆଯିବାର କାରଣ କଣ ?

୪ । ଟିକଟବିକ୍ରୀ ହେବାଦ୍ୱାରା ଆମ୍ଭର କି ଉପକାର ହେଉଅଛି?

୫ । ଲଫାଫା, ମୁଣି, ହ୍ୟାଣ୍ଡେଲ, ବଣ୍ଟାହୁଏ, ଡାକେଇତ— ଏହି ଶବ୍ଦଗୁଡ଼ିକ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

---

# ଜାହାଜ

ବହ୍ମପୁର ଗାଁର ଶିବ ପ୍ରଧାନ ରେଙ୍ଗୁନ ଯାଇ ସେଠାରେ ଦଶବର୍ଷ ରହିଲା ପରେ ଗାଁକୁ ଫେରିଲେ । ସେ ଯେଉଁଦିନ ଗାଁକୁ ଅସିଲେ, ଗାଁ ଯାକର ଲୋକ ତାଙ୍କୁ ଘେରିଯାଇ ରେଙ୍ଗୁନର କଥା ପଚାରିଲେ । ସେହିଦିନଠାରୁ ମାସେ ଯାଏ ଶିବ ପଧାନ ଯେଉଁ ଅଡ଼େ ଯାଏ, ଲୋକେ ତାଙ୍କୁ ସେଇକଥା ପଚାରନ୍ତି । ଦିନେ ସେ ଖରାବେଳେ ସ୍କୁଲ ପିଣ୍ଡାରେ ବସିଛନ୍ତି, ସେହି ଗାଁର ପିଲା ଶ୍ୟାମସୁନ୍ଦର ତାଙ୍କୁ ଏକୁଟିଆ ଦେଖି ଜାହାଜ କଥା ପଚାରିଲା ।

ଶ୍ୟାମ—ଶିବ କକା, ତମେ ପରା ରେଙ୍ଗୁନକୁ ଜାହାଜରେ ଗଲ ? ଜାହାଜ କିପରି କହିଲ ?

ଶିବ—ବାପା, ଜାହାଜ ଖଣ୍ଡେ ଗୋଟିଏ ଗାଁ ପରି । ସେଥିରେ ଶହ ଶହ ଲୋକ ବସି ପାରନ୍ତି । ତା ଭିତରେ ଖାଇବାଘର, ରୋଷାଇଘର, ଡାକ୍ତରଖାନା, ଧୋବାଘର, ଭଣ୍ଡାରଘର ଏବଂ ଗୋଟେ ବଗିଚା ଅଛି ଓ ଖେଳିବାପାଇଁ ମଧ୍ୟ ଜାଗା ଅଛି ।

ଶ୍ୟାମ—ଏତେ ବଡ଼ ଜିନିଷ ପାଣିରେ ନ ବୁଡ଼ି ଭାସୁଛି, କିପରି ? ଜାହାଜ କଣ ସୋଲରେ ତିଆରି ?

ଶିବ—ନା, ଜାହାଜ ଲୁହା ଅଉ କାଠରେ ତିଆରି—ହେଲେ କ'ଣ ହେଲା, ତାହା ଏପରି ଭାବରେ ତିଆରି ହୋଇଛି ଯେ, ସେ ସୋଲ ଡଙ୍ଗାପରି ଭାସେ । ସେଥିରେ ଗୋଟିଏ ଇଞ୍ଜିନ ଖଞ୍ଜା ହୋଇଥାଏ । ଇଞ୍ଜିନଘର ଭିତରେ କୋଇଲା

ନିଆଁ ଯୋଗେ ପାଣି ତତା ହୁଏ । ସେଥିରୁ ବାମ୍ଫ ବାହାରୁଥାଏ । ସେହି ବାମ୍ଫ ଜାହାଜକୁ ପାଣି ଉପରେ ଅଗକୁ ଠେଲି ନିଏ । ଡଙ୍ଗାରେ ପାଲ ଟଣା ଦେଖିଛ ତ ? ପବନ ପାଲକୁ ଠେଲିଲେ ତା ସଙ୍ଗେ ନାଆ ମଧ୍ୟ ପାଣି ଉପରେ ଠେଲି ହୋଇଯାଏ । ପୂର୍ବେ ଏପରି




ପାଲ-ଟଣା ଜାହାଜ ସବୁ ଥିଲା । ଏବେ ସେ ସବୁ ନାହିଁ, ଏବେ ସବୁ ଜାହାଜ ବାମ୍ଫ ବଳରେ ଚାଲେ । ପବନ ଯେପରି ପାଲକୁ ଉପରେ ଥାଇ ଠେଲେ, ଭିତରେ ଥାଇ ଇଞ୍ଜିନର ବାମ୍ଫ ସେହିପରି ଜାହାଜକୁ ଠେଲି ନିଏ ।

**ଶ୍ୟାମ—ଆଜ୍ଞା, ସମୁଦ୍ରରେ ତ' ଖୁବ ଲହଡ଼ା ହେଉଥିବ । ଜାହାଜରେ ପାଣି ପଶିଯାଏ ନାହିଁ ?**

ଶିବ—ଜାହାଜ ଦୁଇ ତିନି ମହଲା ହୋଇଥାଏ । ଉପର ମହଲାଗୁଡ଼ିକ ପାଣି ଉପରକୁ ରହେ—ସେ ଗୁଡ଼ିକରେ ମଣିଷ ରହନ୍ତି । ତଳେ ଗମ୍ଭୀର ଭିତରେ ଜିନିଷପତ୍ର ସବୁ ରହେ । ଜାହାଜର ଦୁଇ ପାଖ ଶକ୍ତ ଲୁହା ଓ କାଠରେ ତିଆରି । ଏହା ପାଣିର ଦଶ ବାର ହାତ ଉପରକୁ ଉଠିଥାଏ, ପାଣି ଆଉ ପଶିବ କୁଆଡ଼େ ?

ଶ୍ୟାମ—ପାଣି ପିନା ପଶେ ନାହିଁ ଜାହାଜ ଟଳମଳ ହୁଏନାହିଁ ?

ଶିବ—ହଁ, ଝଡ଼ ତୋଫାନ ହେଲେ ଜାହାଜ ଭାରି ଟଳମଳ ହୁଏ । ଲୋକଙ୍କ ମୁଣ୍ଡ ବୁଲାଇ ହୁଏ ଏବଂ ବାନ୍ତି ଆସେ । ସେତେବେଳେ ଲୋକେ ଖାଲି ଶେଯ ଧରି ପଡ଼ି ରହନ୍ତି । ଝଡ଼ ଛାଡ଼ିଗଲେ ଆଉ କିଛି ହୁଏ ନାହିଁ ।

ଶ୍ୟାମ—ଜାହାଜରେ ଲୋକମାନେ କ'ଣ ଖାଆନ୍ତି ?

ଶିବ—ଆମେ ଘରେ ଯାହା ଖାଉଁ—ଡାଲି, ଭାତ, ରୁଟି, ଫଳ ଇତ୍ୟାଦି କେତେପ୍ରକାର ଜିନିଷ ଜାହାଜରେ ବୋଝାଇ ହୋଇ ଯାଇଥାଏ । ସେ ସବୁ ପ୍ରତିଦିନ ରୋଷାଇ ହୁଏ— ତାହା ଆମେ ଖାଉଁ ।

ଶ୍ୟାମ—ପାଣି କେଉଁଠାରୁ ଆସେ ?

ଶିବ—କୂଳ ଛାଡ଼ିଲାବେଳେ ଜାହାଜରେ ଭଲ ପାଣି ଜମା କରି ନେଇ ଯାଇଥାନ୍ତି । ତାହା ପିଅପିଇ କରନ୍ତି ।

ଶ୍ୟାମ—ବାଟରେ କଣ ଦେଖିଲ ?

ଶିବ—ସମୁଦ୍ର ଭିତରକୁ ପଶିଗଲେ ଆଉ କିଛି ଦିଶେ ନାହିଁ— କେବଳ ତଳେ ପାଣି, ଉପରେ ଆକାଶ ।

ପ୍ରଶ୍ନ :—୧ । ଜାହାଜ ଦେଖିବାକୁ କପର ?

୨ । ଜାହାଜ ପାଣିରେ ବୁଡ଼ି ନ ଯାଇ ଭାସୁଛି କପର ?

୩ । ଯେଉଁମାନେ ଜାହାଜରେ ଯାଆନ୍ତି, ସେମାନେ ଖାଆନ୍ତି କ'ଣ ?

୪ । ଝଲମଲ, ଧଲଧଲ, ଢଳଢଳ—ଏହି ଶବ୍ଦଗୁଡ଼ିକ ତଳେ ଦିଆ ଯାଇଥିବା ଶୂନ୍ୟ ସ୍ଥାନରେ ପୂରଣ କର ।

ନଦୀ—ଢେଉରେ ବହି ଯାଉଅଛି । ପୋଖରୀ ପାଣିରେ ଡଙ୍ଗାଟି—ହେଉଅଛି । ଯାହା ଦେଖିବାକୁ ଲୋକେ—ହୋଇ ଅଧ୍ଯାଉଛନ୍ତି ।

---

## ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ

ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
ସାଧବଙ୍କ ସାତପୁଅ ଫେରିଲେ ଯେ ନାହିଁ ।
ସାଧବଙ୍କ ପୁଏ ରତ୍ନ ବଣିଜ ଭିଆଣେ,
ସଭିଙ୍କଠୁଁ ସାନ ପୁଅ ବେଶୀ କଥା ଜାଣେ ।
ବଣିଜକୁ ଯାଇଛନ୍ତି ସାତବର୍ଷ ହେଲା,
ଦେଶକୁ ଫେରିଲେ ନାହିଁ, କସ ତାଙ୍କ ହେଲା ?
ବଣିଜ ବେପାର ବଡ଼ ବିଷମ ଜଞ୍ଜାଳ,
ବୁଲୁଥିବେ ଦେଶେ ଦେଶେ ଧର ନଈ ନାଳ ।
କେଉଁ ଦେଶ କେଉଁ ନଈ କେଉଁ ସମୁଦ୍ରରେ,
ବୋଇତ ଅଟକି ଗଲା କେଉଁ ବନ୍ଦରେ ।
ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଛାଇ,
ସାଧବଙ୍କ ସାତପୁଅ ଫେରିଲେ ଯେ ନାହିଁ ।

ଉଡ଼ଯାଏ ଗେଣ୍ଡାଳିଅ ପଡ଼ଯାଏ ଝୁଇ,
ରଜାପୁଅ ବେଣ୍ଟକର ଫେରଲେ ଯେ ନାହିଁ ।
ଗୋଟିଏ ଶୁଭଲେ ଗଢ଼ା ଲବଣ୍ୟ କୁମର,
ବ୍ରତ କର ବଡ଼ରାଣୀ ପାଇଥିଲେ ବର ।
ସମସ୍ତଙ୍କ ବଡ଼ ଆଶା କୁଅଁର ସାଆନ୍ତ,
ବଡ଼ହୋଇ ଛନ୍ଦିବେ ସେ ପରଜାଙ୍କ ଅନ୍ତ ।

ତାଙ୍କୁ କିଆଁ ସଉତୁଣୀ ଅଗ୍ନାଅଗ୍ନି ବଣେ,
ବେଣ୍ଟ ପାଇଁ ପେଲ୍‌ଦେଲ ପାଞ୍ଚ ରଖି ମନେ ।
ଅଗ୍ନାଅଗ୍ନି ବନସ୍ତରେ ବାଟ ଘାଟ ନାହିଁ,
ଅସୁର ଅସୁରୀ ବାଘ ମେଲଣ ସେଠାଇଁ ।
କୋମଳ ପ୍ରତିମା ଆମ କୁଅଁର ସାଆଁନ୍ତ,
ଖରା ଟାଣେ ହେଉଥିବେ କଷ୍ଟେ ହନ୍ତସନ୍ତ ।

ଉଡ଼ଯାଏ ଗେଣ୍ଡାଳିଅ ପଡ଼ଯାଏ ଝୁଇ,
କୁଶଳେ କୁଅଁରମଣି ଫେରବେ କି ନାହିଁ ?
ଉଡ଼ଯାଏ ଗେଣ୍ଡାଳିଅ ପଡ଼ଯାଏ ଝୁଇ,
ଫେରବାର ବେଳ ହେଲେ ଫେରଲେ ଯେ ନାହିଁ !
ସାଧବଙ୍କ ସାତ ବୋହୂ କାନ୍ଦୁଛନ୍ତି ବସି,
ବଡ଼ରାଣୀ କାନ୍ଦୁଛନ୍ତି ଗମ୍ଭୀରୀରେ ପଶି ।
ଉଡ଼ଯାଏ ଗେଣ୍ଡାଳିଅ ପଡ଼ଯାଏ ଝୁଇ,
ମନ ମୋର ଘାଣ୍ଟିହୁଏ ତାଙ୍କ ଦୁଃଖପାଇଁ ।

ପ୍ରଶ୍ନ :—୧ । ରଥ, ଜଞ୍ଜାଳ, ଲବଣ୍ୟ, କୁଶଳେ, ବେଣ୍ଟ, ବୋଇତ, ଗମ୍ଭୀରୀ—ଏ ଶବ୍ଦମାନଙ୍କର ଅର୍ଥ କହ ।

୨ । ସାଧବପୁଅମାନେ ସମୁଦ୍ରରେ ବୋଇତ ନେଇ ବେପାର କରିବାକୁ ବିଦେଶକୁ ଯାଉଥିଲେ, ସେମାନେ ନ ଫେରିବାର କାରଣ କ'ଣ ହୋଇପାରେ ?

୩ । ବଡ଼ରାଣୀଙ୍କ ପୁଅ କୁଅଁର ସାଥିନାଙ୍କୁ ତାଙ୍କର ସଉତୁଣୀ କାହିଁକି ବଣକୁ ପଠାଇ ଦେଲା ?

୪ । କାର୍ତ୍ତିକ ପୂର୍ଣ୍ଣିମା ସାହାନ୍ତା ଘଡରେ ଘରମାନଙ୍କରେ କପର ବୋଇତ ବନ୍ଦାଣ ହୁଏ, ସେ ବିଷୟରେ ଗୋଟିଏ ରଚନା ଲେଖ ।

---

## ହିଂସା କଲେ କଅଣ ହୁଏ

ପୂର୍ବେ ଜଣେ ସାଧବ ଥିଲେ । ତାଙ୍କର ସାଧବାଣୀ ଝିଅଟିଏ ଜନ୍ମ କରି ମରିଯିବାରୁ ସାଧବ ପୁଣି ଥରେ ବାହା କଲେ । ଆଗ ସାଧବାଣୀଙ୍କ ଝିଅର ନାମ ସୁନା । ପଛ ସାଧବାଣୀଙ୍କର ମଧ୍ୟ ଅଳ୍ପ ଦିନରେ ଗୋଟିଏ ଝିଅ ଜନ୍ମ ହେଲା । ସେ ଝିଅଟିର ନାଁ ଦେଲେ କମଳା ।

କିନ୍ତୁ ନୂଆ ସାଧବାଣୀ ସଉତୁଣୀର ଝିଅ ବୋଲି, ସୁନାକୁ ଦେଖି ପାରନ୍ତି ନାହିଁ । ସୁନା ଦେଖିବାକୁ ସୁନ୍ଦର, ତାର ସ୍ୱଭାବଟି ବଡ଼ ଭଲ, ଘରର ବହୁତ କାମ ସେ କରେ । ଏଥିଲାଗି ଲୋକେ ତାକୁ ଭାରି ଭଲ ପାଆନ୍ତି । ନୂଆ ସାଧବାଣୀ ତାହା ସହି ପାରନ୍ତି ନାହିଁ । ସେ ଭାବନ୍ତି, 'ସଉତୁଣୀ ଝିଅକୁ ସମସ୍ତେ କାହିଁକି ଭଲ ପାଉଛନ୍ତି, ମୋ ଝିଅକୁ ଭଲ ପାଉନାହାନ୍ତି କାହିଁକି ?' କିନ୍ତୁ କମଳା ସେତେ ସୁନ୍ଦର ନ ଥିଲା କି ତା ସ୍ୱଭାବ ମଧ୍ୟ ଭଲ ନ ଥିଲା । ବୋଉ ତାକୁ ଗେହ୍ଲା କରିଥିବାରୁ ସେ କିଛି କାମ ନ କରି ଏଣେ ତେଣେ ବୁଲୁଥାଏ ।

କ୍ରମେ ସୁନାକୁ ଲୋକେ ଏତେ ସୁଖ ପାଇଲେ ଯେ, ନୂଆ ସାଧବାଣୀ ତାହା ଆଉ ସହ୍ୟ ପାରିଲେ ନାହିଁ । ସେ ଖାଲି ରାଗରେ ଜଳିବାକୁ ଲାଗିଲେ । ରାଗରେ ସୁନାକୁ ସେ ଘରର ଗୃହିଣୀ ପରି ନାନା କାମ କରାଇଲେ । ଗୁହାଳ ପୋଛା, ପାଣିଅଣା, ଭିତରହିଡ଼ା ଆଦି କାମ ସବୁ ସୁନା କରେ । କମଳା ଖାଲି ବସି ପାନ ଖାଉଥାଏ ।



ଦିନେ ତରକାରୀ ରାନ୍ଧିବାରେ କ'ଣ ଟିକିଏ ବିଗିଡ଼ି ଯାଇଥିବାରୁ ସାଧବାଣୀ ସୁନାକୁ ରାଗରେ ଗାଳିଦେଲେ ଏବଂ ଖରା ଦିନ ଦ୍ୱିପହ-ରରେ ତାକୁ ନଈରୁ ପାଣି ଅଣିବାକୁ ପଠାଇଲେ ସୁନା ଖରାରେ ଗରା ଧରି କାନ୍ଦି କାନ୍ଦି ଯାଉଥାଏ । ତା ଗୋଡ଼ ବାଲିରେ ପୋଡ଼ି ଯାଉଥାଏ । କୌଣସିମତେ ସେ ପାଣି ଧରି ଫେରିଲାବେଳକୁ ବାଟରେ ଦେଖିଲା ଗୋଟିଏ ବୁଢ଼ୀ ବସିଛି । ସେ ସୁନାକୁ ପାଣି ମୁନ୍ଦାଏ ପିଇବାକୁ ମାଗିଲା । ସୁନା କିଛି ନ କହି, ତା ଅଞ୍ଜୁଳାରେ ପାଣି ଢାଳିବାକୁ ଲାଗିଲା । ବୁଢ଼ୀ ଗରାକ-ଯାକ ପାଣି ପିଇଦେଲା । ପିଇସାରି ବୁଢ଼ୀ ଠିଆ ହୋଇ କହିଲା, "ମା ଲୋ, ମୁଁ ଉତେ ଜାଣେ । ତୋ ଦୁଃଖ ମୁଁ ଦେଖୁଛି । ତୋର

ଏଇ ଉପକାର ପାଇଁ ମୁଁ ତତେ ବର ଦେଲି—ତୁ କଥା କହିଲେ ତୋ ପାଟିରୁ ମୁକ୍ତା ଝଡ଼ିବ ।” ଏହା କହି ସେ ବୁଢ଼ୀ ଅନ୍ତର୍ଦ୍ଧାନ ହୋଇଗଲା । ସୁନା ପୁଣି ସେହି ଖରାରେ ନଈରୁ ପାଣି ଆଣି ଘରକୁ ଗଲା ।

ସତକୁ ସତ ଘରକୁ ଯାଇ କଥା କହିଲାବେଳେ ସୁନା ପାଟିରୁ ମୁକ୍ତାଗୁଡ଼ିକ ଝଡ଼ିଲା । ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ । ସାଧବାଣୀ ହିଂସାରେ ଜଳିଗଲେ । ସେ ଭାବିଲେ, ‘ମୋ ଝିଅକୁ ପାଣିପାଇଁ ପଠାଇଲେ ଏମିତି ହୋଇଯିବ ପରା !’

ତହୁଁ ସେ ତହିଁ ଆରଦିନ ଖରାବେଳେ କମଳାକୁ ନଈରୁ ପାଣି ଆଣିବାକୁ ପଠାଇ ଦେଲେ । କମଳା ପାଣି ଆଣି ଫେରୁଛି, ବାଟରେ ସେହି ବୁଢ଼ୀଟିକି ବସିଥିବାର ଦେଖିଲା । ବୁଢ଼ୀ କମଳାକୁ ଦେଖି ପିଇବାକୁ ପାଣି ମାଗିଲା । କମଳା କିନ୍ତୁ ପାଣି ନ ଦେଇ ବିରକ୍ତ ହୋଇ କହିଲା, ‘ମୋ ଗୋଡ଼ ପୋଡ଼ିଯାଉଛି, ମୁଁ ଯାକୁ ପାଣି ଦେଉଛି !’ ଏହା କହି ତର ତର ହୋଇ ଘରଆଡ଼କୁ ଚାଲିଗଲା । ବୁଢ଼ୀ ତା ପଛେ ପଛେ ଅଭିଶାପ ଦେଲା—‘କଥା କହିଲେ ତୋ ତୁଣ୍ଡରୁ ବେଙ୍ଗ ଖସୁ ।’

ସତକୁ ସତ କମଳା ଘରକୁ ଯାଇ କଥା କହିଲାମାତ୍ରେ ତା ପାଟିରୁ ବେଙ୍ଗଗୁଡ଼ାକ ଖସିଲେ । ତା ଦେଖି କମଳା ଓ ତା ବୋଉ ପାଟି କରି କାନ୍ଦିବାକୁ ଲାଗିଲେ ।

ପ୍ରଶ୍ନ—୧ । ନୂଆ ସାଧବାଣୀ ସୁନାକୁ ଘରେ କି କି କାର୍ଯ୍ୟରେ ଲଗାଇଥିଲେ ? କାହିଁକି ?

୨ । ସୁନା ପାଟିରୁ କାହିଁକି ମୁକ୍ତା ଝଡ଼ିଲା ?

୩ । ଏହି ପାଠ ପଢ଼ି କି ନୀତିଶିକ୍ଷା ପାଇଲ ?

୪ । ଯେପରି 'ପାଣିରୁ' 'ପାଲ୍ଣୀ' ହେଲା, ସେହିପରି ଭାବରେ ତଳେ ଦିଆଯାଇଥିବା ଶବ୍ଦଗୁଡ଼ିକ ଗଢ଼ :—

ସାଧବ—　　　　　ଶୂକର—

ଚଷା—　　　　　ତେଲି—

---

## ଲାକ୍ଷ ଚାଷ

ପିଲାମାନେ ହାତରେ ଯେଉଁ ବାଟି ମାରି ଖେଳନ୍ତି ଓ ମାଆମାନେ ଝିଅମାନଙ୍କୁ ଯେଉଁ ନାଲିରଙ୍ଗର ଚୁଡ଼ୁମା ଧରାଇ ଦେଇଥାନ୍ତି, ସେ ସବୁ ଲାଖରେ ତିଆରି । ଲାଖିରି ବୋଲି ଗୋଟିଏ ଜାତି ଅଛନ୍ତି । ସେମାନେ ବାଟି, ଚୁଡ଼ୁମା, ଚୁଡ଼ି, ଦୁଆତ ଇତ୍ୟାଦି ନାନାପ୍ରକାର ଜିନିଷ ଓ ଖେଳନା ତିଆରି କରି ହାଟରେ ଓ ଗାଆଁମାନଙ୍କରେ ବୁଲାଇ ବିକନ୍ତି । ଅଳ୍ପଦିନ ହେଲା କଳ ସାହାଯ୍ୟରେ ସୁନ୍ଦର ସୁନ୍ଦର କାଚର ଚୁଡ଼ି, ଦୁଆତ ଇତ୍ୟାଦି ବାହାରିବାରୁ ହାତତିଆରି ଲାଖଚୁଡ଼ିର ଆଦର କମି ଯାଇଛି । ପୂର୍ବେ ସ୍ତ୍ରୀଲୋକମାନେ ଲାଖର ଚୁଡ଼ି ବ୍ୟବହାର କରୁଥିଲେ । ଆଜି ସୁଦ୍ଧା କେତେକ ଜାତିର ସ୍ତ୍ରୀମାନେ ଲାଖଚୁଡ଼ି ବ୍ୟବହାର କରୁଛନ୍ତି । ଗ୍ରାମଫୋନ୍ ରେକର୍ଡ଼, ପାନିଆ ଓ ବଜାରରେ ଜାପାନୀ ତିଆରି ଯେଉଁ ଖେଳନା କୁଣ୍ଢେଇଗୁଡ଼ିକ ଦେଖୁଁ, ସେ ସବୁ ଲାଖ ତିଆରି ଜିନିଷ । ଅଳତା ଓ ନାନା ପ୍ରକାର ରଙ୍ଗ ଲାଖରେ ତିଆରି ହେଉଛି । ତେଣୁ ଲାଖ ଗୋଟିଏ ବଡ଼ ଦରକାରୀ ଜିନିଷ । ଏହା ଗୋଟିଏ ପ୍ରାଣୀଜାତୀୟ ଜିନିଷ । ମହୁମାଛିମାନେ ଯେପରି ଫୁଲର ରସ ସଂଗ୍ରହ କରି ମହଣ ଓ ମହୁ ତିଆରି କରନ୍ତି, ସେହିପରି ଲାଖପୋକମାନେ କୁସୁମ, ପଳାଶ, ବରକୋଳି ଇତ୍ୟାଦି ଗଛର କୋମଳ ଶାଖା ପ୍ରଶାଖାର ରସ ଶୋଷଣ କରି ସେହି ରସକୁ ଲାଖରୂପରେ ପରିଣତ କରନ୍ତି ।

ଲାକ୍ଷାକୃଷି ଛୋଟନାଗପୁରର ମାଲଅଞ୍ଚଳ ଓ ଓଡ଼ିଶାର ବଣାଇ, ବାମଣ୍ଡା ଓ କେନ୍ଦୁଝର ଜିଲାର ଜଙ୍ଗଲମାନଙ୍କରେ ବହୁ ପରିମାଣରେ ଦେଖାଯାଏ । କୁସୁମ, ପଳାଶ, ବରକୋଳି, ଡିମିରି ପ୍ରଭୃତି ଗଛମାନଙ୍କରେ ବୈଶାଖ, ଜ୍ୟେଷ୍ଠ ଏବଂ କାର୍ତ୍ତିକ ଓ ମାର୍ଗଶିର ମାସରେ ଦୁଇଥର ଲାଖ ବିହନ ଲଗାଯାଏ । ବୈଶାଖ ଓ ଜ୍ୟେଷ୍ଠ ମାସର କୃଷି କାର୍ତ୍ତିକରେ ଏବଂ ମାର୍ଗଶିର ମାସର କୃଷି ବୈଶାଖ ମାସରେ ଅମଦାନୀ କରାଯାଏ । ଅମଦାନୀ ସମୟକୁ ଲାଖ ପୋକଗୁଡ଼ିକର ଜନ୍ମ ଦେବା ସମୟ ହୋଇଥାଏ । ବିହନ ଗଛରେ ଲଗାଇବାର ପ୍ରାୟ ଦୁଇମାସ ଆଗରୁ ଗଛର ୨।୩ ଇଞ୍ଚ ମୋଟ ଡାଳକୁ ଦୁଇ ସମାନ ଭାଗରେ କଟାଯାଏ । କାଟିବାଦ୍ୱାରା ନୂତନ କଅଁଳିଆ ଶାଖା ପ୍ରଶାଖା ବାହାରେ । ସେ ଡାଳମାନଙ୍କରେ ବିହନ ଜନ୍ମ ଥିବା ଡାଙ୍ଗ ଗଣ୍ଡିଏ ଲେଖାଏଁ ବାନ୍ଧି ଦିଆଯାଏ । ଏକଫୁଟ ଲମ୍ବର ବିହନଡାଙ୍ଗ ଦଶ ଫୁଟ ଲମ୍ବ ଡାଳକୁ ବିହନ ଯୋଗାଏ । ଏହି ବିହନଡାଙ୍ଗରୁ ପୋକ ବାହାରି ଡାଳରେ ଲଟକି ଥାନ୍ତି । କିଛିଦିନଯାଏ ଏମାନେ କଅଁଳ ଡାଳର ରସ ଖାଇ ଲାଖ ପ୍ରସ୍ତୁତ କରନ୍ତି । ପୋକ ଲାଖରେ ତାହାର ଘୋଡ଼ଣୀ କରେ; ଅର୍ଥାତ୍ ଲାଖପୋକ ଟସର ପୋକ ପରି ଲାଖରେ ଘୋଡ଼ାଇ ହୋଇ ରହେ । ଅଣ୍ଡିରା ପୋକଗୁଡ଼ିକ ବାହାରି ଚାଲିଯାଆନ୍ତି; କିନ୍ତୁ ମାଈ ପୋକଗୁଡ଼ିକ ରସରେ ଘୋଡ଼ାଇ ହୋଇ ରହି ଜନ୍ମ ଦେବା ଆରମ୍ଭ କରନ୍ତି । ଯେତେବେଳେ ଲାଖପୋକର ଘୋଡ଼ଣୀ ମୋଟା ଦେଖାଯାଏ, ସେତେବେଳେ କୃଷୀମାନେ ଲାଖ ଗଛରୁ ଲାଖ କାଟି ବିହନ ରଖନ୍ତି ଓ ବିକ୍ରୀ କରନ୍ତି ।

ଲାଖ କୃଷି କରିବାରେ ବେଶୀ ପରିଶ୍ରମ ଲାଗେ ନାହିଁ । ବିହନଡାଙ୍ଗରୁ ଅତି ଛୋଟ ସହସ୍ର ସହସ୍ର ଲାଖ ପୋକ ବାହାରି

କଅଁଳିଆ ଶାଖା ପ୍ରଶାଖାର ରସ ଖାଇବା ସମୟରେ ପିମ୍ପୁଡ଼ି, ଝଇ, ଜନ୍ଦା ପ୍ରଭୃତି ତାଙ୍କୁ ଖାଇଯାଆନ୍ତି । ଏଣୁ ଏ ସମୟରେ ଗଛ ମୂଳ ଖୋଳି ଖାର ପ୍ରଭୃତି ଦେଲେ ଉକ୍ତ ଜନ୍ଦା, ପିମ୍ପୁଡ଼ିଙ୍କ କବଳରୁ ରକ୍ଷା ମିଳେ । ଥରେ ନୂତନ ଗଛର ଡାଳକୁ କାଟି ବନ୍ଧନ ଲଗାଯାଏ, ତାହାପରେ ଉକ୍ତ ଗଛକୁ ବନ୍ଧନ ଦେବା ଉଦ୍ଦେଶ୍ୟରେ ଡାଳ କାଟିବାକୁ କିମ୍ବା ବନ୍ଧନ ଦେବାକୁ ପଡ଼େ ନାହିଁ । କାରଣ ଲାଖ ଅମଦାନୀ ସମୟରେ ଡାଳ କଟାଯାଇ ଲାଖ ସଂଗ୍ରହ କରାଯାଏ ଏବଂ ସେ ସମୟରେ ବନ୍ଧନପାଇଁ କେତେକ ଗଛରେ ଲାଖ ଗୁଣ୍ଡ ଦିଆ ହୋଇଥାଏ ।

ପ୍ରଶ୍ନ:—୧ । କେଉଁ କେଉଁ ଗଛରୁ ଲାଖ ବାହାରେ ?

୨ । କେଉଁ ଗଡ଼ଜାତ ରାଜ୍ୟମାନଙ୍କରେ ଲାଖଚାଷ ହେଉଛି

୩ । ଲାଖଚାଷ କିପରି ହୁଏ—ଏ ବିଷୟରେ ତୁମ୍ଭ ବନ୍ଧୁଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖ ।

୪ । ଲାଖଦ୍ୱାରା କି କି ଜିନିଷ ତିଆରି ହେଉଛି ?

୫ । ଲାଖର, ପାନର ପରି ଆଉ ତିନୋଟି ଜାତିର ନାମ କହ ।

---

## ଲଢ଼ିବି

ରାବଣ ଯେ ଘେନିଗଲା ସୀତାଙ୍କୁ ରଥରେ,
ରାମ ଲକ୍ଷ୍ମଣ କେହୁ ନ ଥିଲେ ପାଖରେ,
ସୀତା କାନ୍ଦିଲେ ବିକଳେ,
ଥିଲେ ମୁଁ ଥାଆନ୍ତି ଲଢ଼ି ରାବଣ ସଙ୍ଗରେ ।

ଦୁଃଶାସନ ଯେ କାଳରେ ନେଲା ଦ୍ରୌପଦୀଙ୍କି,
ହସ୍ତିନା ନଗରୁ କେଶ ବାସ ଟାଣି ଝିଙ୍କି,
ଥାନ୍ତି ପଦ ମୁଁ ସେ କାଳେ,
ଯୁଝିଥାନ୍ତି ଦୁଃଶା ସହ ବାଣେ ଦରବାରେ ।
ଅଗ୍ନାଅଗ୍ନି ବନସ୍ତରେ ବୁଢ଼ୀ ରାକ୍ଷାସୁଣୀ,
ଲୁଗୁଇଛୁ ରଜାଝିଅ କରି ମନ୍ତ୍ର ଗୁଣି,
ଯାଇ ପଶି ବନସ୍ତରେ,
ଉଦ୍ଧାରିବି ରାଜକନ୍ୟା ମାରି ରାକ୍ଷସୀରେ ।
ଖାଇବାକୁ ନାହିଁ କାର ପିନ୍ଧିବାକୁ ବାସ,
ବାଧିକାରେ ପଡ଼ି କେତେ ପାଉଛନ୍ତି ତ୍ରାସ,
କଷ୍ଟ ହରିବି ତାଙ୍କର,
ଲଗାଇବି ସବୁମନ୍ତେ ମୋର ବୁଦ୍ଧି ବଳ ।
ଦୁର୍ବଳ ଉପରେ କେହି କଲେ ଅତ୍ୟାଚାର,
ଲଢ଼ିବାକୁ ସବୁବେଳେ ଥିବି ମୁଁ ତିଆର,
ଯଶ ଅର୍ଜିବି ଏପରି,
କି ଲଭି ମଣିଷ ପଶୁପରି ବଞ୍ଚିକରି ।

ପ୍ରଶ୍ନଃ—୧ । କେଶବାସ, ଦରବାରେ, ତ୍ରାସ— ଏ ଶବ୍ଦମାନଙ୍କର ଅର୍ଥ କହ ।

୨ । ତୁମେ କପରି କାର୍ଯ୍ୟ କଲେ ପୃଥିବୀରେ ଯଶ ରହିବ ?

୩ । ଲୋକେ ଖାଇବାକୁ ପାଉନାହିଁ, ଲୋକ ଲୁଗା ଖଣ୍ଡିଏ ପିନ୍ଧିବାକୁ ପାଉନାହିଁ, ଲୋକେ ରୋଗରେ ପଡ଼ି ସଡ଼ୁଛନ୍ତି—ଏମାନଙ୍କପାଇଁ ତୁମେ କ'ଣ କରିବ ?

# ସୁବୁଦ୍ଧିଙ୍କ ସୁବୁଦ୍ଧି

ଲୋକ ପଇସାଟିଏ ମୁଠିଁ ପାରେ ନାହିଁ, ପାଞ୍ଚ ପଇସା କାହାକୁ ଦେଇଦେବାକୁ ଲୋଭ ଲାଗେ । ମାତ୍ର ସଂସାରରେ ପୁଣି ଲୋକ ଅଛନ୍ତି ଯେଉଁମାନେ ଦେଶର ଭଲ ପାଇଁ, ଲୋକମାନଙ୍କର ମଙ୍ଗଳପାଇଁ ହଜାର ହଜାର ଟଙ୍କା ଦେଇ ପକାନ୍ତି ।

ଆଜକୁ ସତୁରି ବର୍ଷ ତଳେ ବଡ଼ାମ୍ବା ମୁଲକରେ ଗୋପୀନାଥପୁର ଗାଁରେ ମଦନମୋହନ ସାହୁ ବୋଲି ଜଣେ ଲୋକ ଜନ୍ମ ହୋଇଥିଲେ । ତାଙ୍କୁ ପିଲାଦିନେ ସମସ୍ତେ ମୋହନ ସାହୁ ବୋଲି ଡାକୁଥିଲେ । ବଡ଼ାମ୍ବା ମୁଲକରେ ମହାନଦୀ କୂଳରେ ଗୋପୀନାଥପୁର ଗୋଟିଏ ବଡ଼ ମହାଜନ ଗାଁ । ସେଥିରେ ଅନେକ ତେଲିମହାଜନ ବାସ କରନ୍ତି । ଗାଁଟି ମହାନଦୀ କୂଳରେ ଥିବାରୁ ନାନା ବେପାର କରି ଲୋକମାନେ ସୁଖରେ ଚଳନ୍ତି । ମୋହନ ସାହୁଙ୍କ ଜନ୍ମ ସେହି ତେଲି କୁଳରେ । ବାପା ତାଙ୍କର ବଡ଼ ଗରିବ ଥିଲେ । ତାଙ୍କର ଜମିବାଡ଼ି କିଛି ନ ଥିଲା । ଦିନେ ଖାଇଲେ ଦିନେ ଉପବାସ ରହୁଥିଲେ । ମୋହନଙ୍କର ଆଉ ଜଣେ ଭାଇ ଥିଲେ । ତାଙ୍କ ନାଁ ନଟବର । ମୋହନ ଓ ନଟବର ପ୍ରଥମେ ଗାଁ ଚାଟଶାଳୀରେ ପଢ଼ିଲେ । ଗରିବ ଅବସ୍ଥା ଯୋଗୁଁ ବେଶୀ ପଢ଼ି ପାରିଲେ ନାହିଁ । ପୁଣି ଏହି ସମୟରେ ବାପ ମରିଗଲେ । କିପରି ପୋଷି ହେବେ, ତାଙ୍କୁ ସେ ଚିନ୍ତା ଆସି ଘାରିଲା । ଦୁଇ ଭାଇଙ୍କ ଭିତରେ ମୋହନସାହୁ ସିଆଣିଆ ଓ ପରିଶ୍ରମୀ । ବଡ଼ ହେବା ସଙ୍ଗେ ସଙ୍ଗେ ସେ ଭାବିଲେ କିପରି ଧନ ରୋଜଗାର କରିବେ । ସେ ପରର ବୋହଂବହି ମୂଲ ଲାଗି ଯେଉଁ ଦୁଇପଇସା ପାଆନ୍ତି ସେଥିରେ କୁଟୁମ୍ବ ପୋଷନ୍ତି । ଯେଉଁ ଗୁଡ଼ି ପଇସା ବଳେ, ତାକୁ

ଖାଇତ ବଖଣନ୍ତି । ସେ ଧନେ ହେଲେ ପର ଘରେ ହାତ ପତେଇ ନ ଥିଲେ । ଖରାନାହିଁ, ବର୍ଷାନାହିଁ, ସଦାବେଳେ ମୋହନସାହୁ କାମରେ ଲଗିଥାନ୍ତି । ତାଙ୍କ ଇଚ୍ଛା କପର ପାଞ୍ଚ ପଇସା ସାଇତ ରଖିବେ । ମନ ଥିଲେ ଧନ ମିଳେ । ଅସ୍ତେ ଅସ୍ତେ ମୋହନସାହୁ ପାଞ୍ଚ ଦଶ ଟଙ୍କା ରଖି ତେଲ, ଲୁଣ, ପରିବା ଇତ୍ୟାଦିର ଦୋକାନଟିଏ କଲେ । ଦୋକାନଟିରେ ଖୁବ୍ ଲଭ ହେଲା, ଧନ ମଧ୍ୟ ବଢ଼ିଲା । ତା ପରେ ମୋହନସାହୁ ବଡ଼ ଦୋକାନଟିଏ କଲେ । ଗୁଡ଼, ଧାନ, ମୁଗ, କୋଶଳା ପ୍ରଭୃତି କିଣି କଟକରେ ବେପାର ଆରମ୍ଭ କଲେ । ସେ ସତ୍‌ଉପାୟରେ ଧନ ଅର୍ଜ୍ଜନ କରିବାର ଦେଖି ବଡ଼ାମ୍ବା ରଜା ତାଙ୍କୁ ସୁବୁଦ୍ଧି ପଦ ଦେଲେ । ଏଣିକି ତାଙ୍କୁ ମୋହନ ସୁବୁଦ୍ଧି ବୋଲି ସମସ୍ତେ ଡାକିଲେ । ସୁବୁଦ୍ଧି ମଧ୍ୟ ବେପାର କରି ହଜାର ହଜାର ଟଙ୍କା ପାଇଲେ । କାଲି ଯେଉଁ ଲୋକ ଦାଣ୍ଡରେ ମୂଲିଆ ପରି ବୁଲୁଥିଲା, ଏବେ ସେ ଲକ୍ଷେ ଟଙ୍କାର ମାଲିକ । ଯେ ଶୁଣିଲା, ସେ ଆଶ୍ଚର୍ଯ୍ୟ ହେଲା । ସମସ୍ତେ କହିଲେ—ମୋହନ ସୁବୁଦ୍ଧିଙ୍କ କପାଳ ଫିଟିଲା ।

ମୋହନ ସୁବୁଦ୍ଧି ଏତେ ଟଙ୍କା ପାଇ ଅଳସୁଆ ହୋଇଯାଇ ନ ଥିଲେ । ସେ ବେଶୀ ବେଶୀ କାମରେ ଲଗି ପୁଣି ବହୁତ ଟଙ୍କା ରୋଜଗାର କଲେ । ସେ ଭାବିଲେ, "ଧନ ଅର୍ଜିଲେ ଧର୍ମ୍ମ କର, ଧର୍ମ୍ମେ ପ୍ରାପତ ନରହର ।" ସେ ବହୁତ ଟଙ୍କା ଲଗାଇ ତାଙ୍କ ଗାଁ ପାଖ ସିଂହନାଥ ପଠାରେ ଗୋଟିଏ ଧର୍ମ୍ମଶାଳା କରାଇଲେ । ରାସ୍ତା ନିକଟରେ କୂଅ, ପୋଖରୀ ଖୋଳାଇଲେ । କେତେକ ସ୍ଥାନରେ ଅମ୍ବତୋଟା ଲଗାଇଲେ । ସେ ଏକାବେଳକେ ତେଇଶ ହଜାର ଟଙ୍କା ଦେଇ ବଡ଼ାମ୍ବାରେ ଗୋଟିଏ ମଧ୍ୟ ଇଂରାଜୀ

ବିଦ୍ୟାଳୟ କରାଇଲେ । ପ୍ରତିବର୍ଷ ସେଥିରେ ଶହ ଶହ ପିଲା ପଢ଼ିଲେ । ଏସବୁ କାମ ଦେଖି ଇଂରେଜ ସରକାର ତାଙ୍କୁ ରାୟ ସାହେବ ପଦ ଦେଇଥିଲେ ।

ରାୟ ସାହେବ ମଦନମୋହନ ସୁବୁଦ୍ଧି ଆଜକୁ ବାରବର୍ଷ ହେଲା ମଲେଣି । ତାଙ୍କ ପୁଅ ଦୀନବନ୍ଧୁ ଚୌଧୁରୀ ଅଠର ସତର ହଜାର ଟଙ୍କା ଦେଇ ଏହି ବିଦ୍ୟାଳୟକୁ ଲଗାଇ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଦୁଇଟି ଶ୍ରେଣୀ ଖୋଲିଲେ । ସେ ମଧ୍ୟ ତାଙ୍କର ଏହି କାର୍ଯ୍ୟ ସକାଶେ ସରକାରଙ୍କଠାରୁ ରାୟ ସାହେବ ପଦ ପାଇଲେ । ଯେତେ ଦିନଯାଏ ଏହି ସ୍କୁଲଟି ଥିବ, ସେତେଦିନ ଯାଏ ବାପ ପୁଅଙ୍କର ସୁନାମ ହେଉଥିବ ।

ପ୍ରଶ୍ନ :—୧ । ଯେଉଁ ଲୋକ ମୂଲ ଲାଗୁଥିଲା, ସେ ଏତେ ଗୁଡ଼ାଏ ଟଙ୍କା କେଉଁଠୁ ପାଇଲା ?

୨ । ମୋହନସାହୁ କିପରି ମୋହନ ସୁବୁଦ୍ଧି ହେଲେ ?

୩ । ବାପ ପୁଅ ଦୁହେଁଯାକ ରାୟସାହେବ ପଦ କିପରି ପାଇଲେ ?

୪ । ସୁଟିଲା, କପାଳ ଫିଟିଲା, ହାତ ପଡେଇ ନ ଥିଲେ, ନାଁ ପଡ଼ୁଥିବ—ଏମାନଙ୍କୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

---

## ପୁରୁଣା କାଳର କଥା

ଗୋଟିଏ ବଣ ଭିତରେ ଝରଣାଟିଏ ବୋହି ଯାଉଥିଲା । ସେହି ଝରଣାରୁ ଜଣେ ଲୋକ ପାଣି ପିଉ ପିଉ ପାଣି ଭିତରୁ ଏକପ୍ରକାର ଶସ୍ୟର ଦାନାଟିଏ ପାଇଲା । ତାହା ସେ ହାତରେ ଧରି କ'ଣ ବୋଲି ଦେଖିଲା, ମାତ୍ର ଚିହ୍ନି ପାରିଲା ନାହିଁ । ସେ

ତାହା ନେଇ ତାଙ୍କ ମୂଲକର ରାଜାଙ୍କୁ ଦେଲା । ରାଜା ସେହି ଦାନାକୁ ତାଙ୍କର ସଭାର ଲୋକଙ୍କୁ ଚିହ୍ନାଇଲେ; କିନ୍ତୁ କେହି ଚିହ୍ନି ପାରିଲେ ନାହିଁ । ଦିନେ ଦାନାଟି ଗୋଟିଏ ଝରକା ଉପରେ ଥୁଆ ହୋଇଥିଲା, ଏହି ସମୟରେ ଗୋଟିଏ ଚଢ଼େଇ କୁଆଡ଼ୁ ଉଡ଼ିଆସି ତହିଁରେ ଥଣ୍ଟ ମାରିଦେଲା । ସେତେବେଳେ ଜଣାପଡ଼ିଲା ଯେ ତାହା ଗୋଟାଏ ଶସ୍ୟର ଦାନା । ଯେ ଦେଖିଲା, ସେ ଆଶ୍ଚର୍ଯ୍ୟ ହେଲା । ସମସ୍ତେ କହିଲେ, "ଏପରି ଶସ୍ୟର ଦାନା ତ କେବେ ଦେଖା ନ ଥିଲା !" ରାଜା କହିଲେ, "ଅଚ୍ଛା, ରାଜ୍ୟର ବୁଢ଼ା ବୁଢ଼ା ଲୋକଙ୍କୁ ଡକାଇ ପଚାରିବା ।"

ସେ ରାଜ୍ୟର ଯେ ସବୁଠାରୁ ବୁଢ଼ା ଲୋକ, ତାକୁ ଡକାଗଲା । କିଛି ସମୟ ପରେ ଗୋଟିଏ ବୁଢ଼ା ଦ'ହାତରେ ଦୁଇଟି ବାଡ଼ି ଭରା ଦେଇ ଲଇଁ ଲଇଁ ଥରି ଥରି ଆସି ପହଞ୍ଚିଲା । ବୁଢ଼ା ଆଖିକୁ ଭଲ ଦେଖାଯାଉ ନ ଥିଲା; ତା'ର ଦେହ ହାତ ଥରୁଥିଲା । ରାଜା ତାକୁ କହିଲେ, "ବୁଢ଼ା, ଏ ଦାନାଟାକୁ ଦେଖିଲୁ । ଆମ ରାଜ୍ୟରେ କେବେ ଏପରି ଶସ୍ୟ ହେଉଥିଲା ?" ବୁଢ଼ା ଅଣ୍ଡାଳି ଅଣ୍ଡାଳି ଦାନାଟିକୁ ଧରି କହିଲା, "ଆଜ୍ଞା, ଏପରି ଶସ୍ୟର ଦାନା ମୁଁ ଦେଖିନାହିଁ କି ଏପରି କଥା ଶୁଣିନାହିଁ । ମୋ ବାପକୁ ଡାକିଲେ ସେ କହିପାରିବ ।"

ଏ ବୁଢ଼ାର ପୁଣି ବାପ ଅଛି ! ଏ କଥା ଭାବି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ରାଜା ବୁଢ଼ାର ବାପକୁ ଡକାଇଲେ । ବୁଢ଼ାର ବାପ ଖଣ୍ଡିଏ ମାତ୍ର ବାଡ଼ି ଭରା ଦେଇ ଅଳ୍ପ ଲଇଁ ଲଇଁ ଆସି ପହଞ୍ଚିଲା । ଆଗ ବୁଢ଼ାଠାରୁ ତାହାର ଆଉ ଟିକିଏ ବେଶୀ ଜୋର ଥିଲା ଓ ତାକୁ ଅଳ୍ପ ଅଳ୍ପ ଦେଖାଯାଉଥିଲା । ସେ ଦାନାଟିକୁ ଦେଖି କହିଲା, "ଆଜ୍ଞା, ମୋ ଅମଳରେ ଇମିତି ଦାନାଥିବା ଫସଲ

ଅମଦାନୀ ହେଉ ନ ଥିଲା । ମୋ ବାପ ଅମଳରେ ଇମିତ ଫସଲ ଅମଳ ହେଉଥିଲା ବୋଲି ମୁଁ ଶୁଣେ, ତାଙ୍କୁ ଡକାଇ ପଚ୍ଚାରନ୍ତୁ ।”

ଏତେବଡ଼ ବୁଢ଼ାର ପୁଣି ବାପ ଅଛି, ଏ କଥା ଭାବି ସମସ୍ତେ ଅଦ୍ଭୁତ ଆଶ୍ଚର୍ଯ୍ୟ ହେଲେ । ତା ପରେ ରାଜା ତାର ବାପାକୁ ଡକାଇଲେ । ତା ବାପା ବାଡ଼ି ଭରା ନ ଦେଇ କମ୍ପା ନ ଲଇଁ ରାଜାଙ୍କ ପାଖକୁ ସଳଖେ ଆସି ପହଞ୍ଚିଲା, ତା ମୁଣ୍ଡବାଳ ଝୋଟପରି



ଧଳା ହୋଇ ଯାଇଥିଲା । ପୁଅ ଓ ନାତିଙ୍କ ଅପେକ୍ଷା ତା’ ଦେହରେ ବେଶୀ ବଳ ଥିଲା । ତା ଆଖିକୁ ଭଲ ଦିଶୁଥିଲା । ସେ ରାଜାଙ୍କ ପାଖରେ ପହଞ୍ଚି ଦାନଟିକୁ ହାତରେ ଧରି କହିଲା, “ମହାରାଜ, ମୋ ପିଲାଦିନେ ଏପରି ଦାନାଥିଲା ଫସଲ ଆମଦାନୀ ହେଉଥିଲା ।”

ରାଜା ପଚାରିଲେ, “ଅଚ୍ଛା ବୁଢ଼ା, ତୁ କିଆଁ ତୋ ପୁଅ ନାତିଙ୍କ ଅପେକ୍ଷା ବେଶୀ ବଳୁଆ ହୋଇଛୁ ? ତୋ ଆଖିକୁ କିପରି ଭଲ

ବଦଳୁଛୁ ? ବାଢ଼ ନ ଧର ତୁ କପର ଗୁଲୁଛୁ ? ତୋ ପୁଅ ନାତି-ମାନେ କାହିଁକି ବାଢ଼ଧର ଗୁଲୁଛନ୍ତି ? ସେତେବେଳେ କପର ଶସ୍ୟରେ ଏଡ଼େ ଏଡ଼େ ଦାନା ହେଉଥିଲା, ଆଜିକାଲି କାହିଁକି ହେଉନାହିଁ ।

ବୁଢ଼ା ଟିକିଏ ହସି କହିଲା, "ଅଜ୍ଞା, ସେ ସମୟରେ ମାଟି ବଳୁଆ ଥିବାରୁ ଶସ୍ୟ ମଧ୍ୟ ବଡ ବଡ଼ ହେଉଥିଲା । ଏ ଜମିଖଣ୍ଡ ମୋର, ସେ ଜମିଖଣ୍ଡ ତାର ଏପରି କିଛି ନିୟମ ନ ଥିଲା । ଯେ ଯେଉଁଠି ପାରୁଥିଲା, ସେଠାରେ ସେ ଚାଷ କରିପାରୁଥିଲା । ବହୁ ଜଙ୍ଗଲ ଥିବାରୁ ଏ ବର୍ଷ ଜଙ୍ଗଲ କାଟି ଏ ଖଣ୍ଡି ଚାଷ କଲେ, ପରବର୍ଷ ଲୋକେ ଆଉ ଖଣ୍ଡେ ଜମି ଚାଷ କରୁଥିଲେ । ସେଥିପାଇଁ ମାଟିର ବଳ କମୁ ନ ଥିଲା । ଲୋକେ ସେପରି ସାରବାନ୍ ଖାଦ୍ୟ ଖାଇ ବଳୁଆ ଓ ନିରୋଗ ହେଉଥିଲେ । ଲୋକମାନେ ଅତି ସରଳ ଥିଲେ । କ୍ରମେ ଲୋକ ବହୁତ ହେବାରୁ ଗୋଟିଏ ଜମି ସବୁ ବର୍ଷ ଚାଷ ହେଲା । ଜମିର ବଳ କମିଲା । ସେତେ ବଡ଼ ଦାନାଥିବା ଶସ୍ୟ ଆଉ ହେଲା ନାହିଁ କି ସେତେ ଫଳିଲା ନାହିଁ । ଲୋକ ଖାଇବାକୁ ପାଇଲେ ନାହିଁ । ଅଭାବ ହେବାରୁ ଲୋକମାନେ ଠକିବାକୁ ଶିଖିଲେ, ମିଛ କହିଲେ, ସେମାନଙ୍କ ବଳ କମିଲା, ରୋଗ ଓ ଦୁର୍ବଳ ହେଲେ । ସେଥିପାଇଁ ମୋ ଅପେକ୍ଷା ମୋ ପୁଅ ନାତିଙ୍କ ବଳ କମ୍ । କିନ୍ତୁ ଜମିରେ ଉପଯୁକ୍ତ ସାର ଦେଲେ ସେହି ଜମିରେ ପୁଣି ଏହିପରି ବଡ଼ ଦାନା ଫଳିବ । ମୁଁ ଶୁଣିଛି, ସାହେବଙ୍କ ଦେଶରେ ଏହା ହେଉଛି । ଆମ ଗାଈ ଛଟାଙ୍କିଏ ଦୁଧ ଦେଲେ ତାଙ୍କ ଗାଈ କୋଡ଼ିଏ ସେର ଦୁଧ ଦେଉଛି । ସେଥିପାଇଁ ସେମାନେ ଖାଇପିଇ ଷଣ୍ଢପରି ହୋଇଛନ୍ତି । ଆମ ଲୋକେ ଅଳସୁଆ ଓ ନିର୍ବୁଦ୍ଧିଆ ହୋଇ ଦୁଃଖ ପାଉଛନ୍ତି ।"

ରାଜା ବୁଢ଼ା କଥା ଶୁଣି ଅତି ଖୁସି ହେଲେ ଓ ତାକୁ ପୁରସ୍କାର ଦେଇ ବିଦାୟ କଲେ ।

ପ୍ରଶ୍ନ—୧ । ଶସ୍ୟର ଦାନାକୁ କେହୁ କାହିଁକି ଚିହ୍ନି ପାରୁ ନ ଥିଲେ ?

୨ । ବୁଢ଼ା ତା ପୁଅ ଓ ନାତିଙ୍କଠାରୁ ବେଶୀ ବଳୁଆ କିପରି ଥିଲା ?

୩ । ପୂର୍ବେ କାହିଁକି ଶସ୍ୟର ଦାନାଗୁଡ଼ିକ ଏପରି ବଡ଼ ବଡ଼ ହେଉଥିଲା ?

୪ । ସାହେବମାନେ ଅମ୍ଭମାନଙ୍କଠାରୁ ବେଶୀ ବଳୁଆ କାହିଁକି ?

---

# ଶୁକ ଦେବୀ

ମହାନଦୀ କୂଳେ ବାଙ୍କୀ ମୁଲକରେ
ଥିଲେ ଜଣେ ବଡ଼ ରଜା,
ଧନଞ୍ଜୟ ଭଞ୍ଜ ନାମ ତାହାଙ୍କର,
ସୁଖେ ପାଳୁଥିଲେ ପ୍ରଜା ।୧।

ଖୋରଧାର ରଜା ରାମଚନ୍ଦ୍ର ନାମ
ନ ସହି ତାହାଙ୍କ କୀର୍ତ୍ତି,
ଲଗାଇଲେ ଯୁଦ୍ଧ ବାଙ୍କୀ ମୁଲକରେ
ସଇନ ସାମନ୍ତ ଧରି ।୨।

ସମର ଭୂଇଁରେ ଧନଞ୍ଜୟଙ୍କର
ମୁଣ୍ଡ ପକାଇଲା ହାଣି,
ଶୁଣିଲେ ଖବର ମୁହୂର୍ତ୍ତି ଭିତରେ
ବାଙ୍କୀଗଡ଼ ରାଜରାଣୀ ।୩।

"କି ହେଲା, କି ହେଲା" ବୋଲି ସେ କହିଲେ,
"ସ୍ୱର୍ଗର ରାମଚନ୍ଦ୍ର ଦେବ,
ମୁହିଁ ଥାଉଁ ଥାଉଁ ଏ ସୁନା ମୁଲକ
ଅକାରଣେ ଠକି ନେବ ? ୪ ।
ଜୀଇଁ ଥାଉଁ ଥାଉଁ ଅପଣା ଦରବ
ନ ରଖି ପାରଇ ଯେହୁ,
ପୋଡ଼ି ଯାଉ ତାର ମଣିଷପଣିଆ,
ଜୀଇ ମରିଥା ଏ ସେହୁ ।" ୫ ।
ନଅର ଭିତରୁ ଦନେ ହେଲେ ରାଣୀ
ନ ଥିଲେ କେବେ ବାହାରି,
ଅପମାନ ଦେଖି ଲଢ଼ିବାକୁ ଅଜି
ସଜ ହେଲେ ଖଣ୍ଡା ଧରି । ୬ ।
ବୁଢ଼ା ଦେବଦତ୍ତା କେତେ ମନା କଲେ
ନ ମାନିଲେ ତାଙ୍କ କଥା,
କହିଲେ, "ଦେବଦତ୍ତେ, ସରମେ କେମନ୍ତେ
ଗୁଲିବା ହେ ଟେକି ମଥା ? ୭ ।
ଲାଜେ ବଞ୍ଚିବାଠୁଁ ମରଣଟି ଭଲ,
ହାରିବାଠୁ ଭଲ ଜଣା;
ମୋ ଭାଇ ବଡ଼ାମ୍ବା- ରଜାଙ୍କୁ ପଚାର
ସହାୟ ହୋଇବେ କି ନା ? ୮ ।
( ମୋର ) ପୁଅ ଦୟାନିଧି ମଣିଷ ହୋଇଲେ
ଗରବ କରିବ ଭାଳି,
ବାପ ପରି ତାର ମାଆ ଯାଇଥିଲା
ଯୁଦ୍ଧେ ଧରି ତରବାରି" । ୯ ।

ଏହା କହୁ ରାଣୀ ଘୋଡ଼ୀ ଛୁଡ଼ଦେଲେ
ଡେଙ୍ଗ ଉଠି ବାଙ୍କୀ ଜନ,
କାଣ୍ଡ, ଶର, ଭଲ୍ଲ, ଛୁରୀ ଘେନି ସର୍ବେ
ଯୁଦ୍ଧକୁ କଲେ ଧାବନ । ୧୦ ।



( ଶୁକ ଦେବୀ )

ବଡ଼ାମ୍ବା ରଜାଙ୍କ ବକ୍ସୁଅ ସଇନେ
ବାଟେ ଅସି ଗଲେ ଯୁଟି,
ଶହ ଶହ ଶତ୍ରୁ ସେନା ହାଣ ଖାଇ
ଭୂଇଁରେ ପଡ଼ଲେ ଲୋଟି । ୧୧ ।

ରାମଚନ୍ଦ୍ର ଦେବ କଇଦୀ ହୋଇଲେ,
ଧନ୍ୟ ବୀର ଓଡ଼ିଆଣୀ—
ଅଜଯାଏ ଲୋକେ ପାଶୋର ନାହାନ୍ତି
ଶୁକ ଦେବୀ ସାଆନ୍ତାଣୀ । ୧୨ ।

ପ୍ରଶ୍ନ—୧ । ଖୋରଧା ରଜା ବାଙ୍କୀ ରଜାଙ୍କ ସହିତ କାହିଁକି ଯୁଦ୍ଧ କଲେ ?

୨ । ଶୁକ ଦେବୀ ଦେବତୀଙ୍କୁ କ'ଣ କହି ବାହାରିଥିଲେ ?

୩ । ବଡ଼ାମ୍ବା ରଜା ଶୁକ ଦେବୀଙ୍କୁ କାହିଁକି ଯୁଦ୍ଧରେ ସାହାଯ୍ୟ ଦେଇଥିଲେ ?

୪ । ରାଣୀ ଶୁକ ଦେବୀଙ୍କୁ ଲୋକେ କାହିଁକି ଅଜଯାଏ ପ୍ରଶଂସା କରୁଛନ୍ତି ?

୫ । କେତେଗୁଡ଼ିଏ ଶବ୍ଦ ତଳେ ଦିଆ ଯାଇଅଛି । ତାହାର ଓଲଟା ଅର୍ଥ ଥିବା ଶବ୍ଦ, ସଜାଇ ରଖ—

| | |
|---|---|
| ରଜା | ମିତ୍ର |
| ଶତ୍ରୁ | ମରିବା |
| ପିଲା | ଦୁଃଖ |
| ସୁଖ | ବୁଢ଼ା |
| ଞ୍ଚାଇବା | ପ୍ରଜା |

---

## ଭୟ କି ଜିନଷ

ଜଣେ ସାହେବଙ୍କର ଗୋଟିଏ ପୁଅ ଥିଲା । ସାହେବଙ୍କ ମା ସେହି ପୁଅଟିକୁ ବଡ଼ ଯତ୍ନରେ ପାଳୁଥିଲେ । ପିଲାଟି କିନ୍ତୁ ବଡ଼ ଅମାନିଆ । ଗୋଡ଼ସ୍ୱଇଁମାଙ୍କ କଥା ନ ମାନି ବେଳେ ବେଳେ କୁଆଡ଼େ ଯେ ଗୁଲିଯାଏ, ତାହାର ପତ୍ତା ମିଳେ ନାହିଁ । ବୁଢ଼ୀ ଏଥିଲାଗି ଭାରି ବିରକ୍ତ ହୁଅନ୍ତି ।

ଦିନେ ସକାଳୁ ଜଳଖିଆ ଖାଇଦେଇ ପିଲାଟି କୁଆଡ଼େ ବୁଲି ଗୁଲିଗଲା । ସକାଳ ହୋଇଛି, ଖରା ପଡ଼ୁଛି, ପକ୍ଷୀମାନେ

ଗାଉଛନ୍ତି । ପିଲଟି ଏହା ଦେଖି ଦେଖି ଘରଠାରୁ ବହୁତ ବାଟ ଚାଲିଗଲା । ଅନେକ ଦୂରକୁ ଗଲା ପରେ ଗୋଟିଏ ଝରଣା କୂଳରେ ପହଞ୍ଚିଲା । ଝରଣାର ନିର୍ମଳ ଜଳ । ତାହା କୂଳରେ ନାନାପ୍ରକାର ଗଛ ଥିବାରୁ ଛାଇ ହୋଇଥିଲା । ପିଲଟି ଖରାରେ ଚାଲି ଚାଲି ହାଲିଆ ହୋଇ ପଡ଼ିଥିଲା; ଝରଣା କୂଳ ଓ ଛାଇ ଦେଖି ବସି ପଡ଼ିଲା । ଝରଣାର ପାଣି କୁଳୁକୁଳୁ ହୋଇ ବହି ଯାଉଥାଏ । ପିଲଟି ବସି ବସି ତାହା ଶୁଣୁଥାଏ ।



ଏହାପର କେତେବେଳଯାଏଁ ପିଲଟି ବସିଛି, ତାକୁ ଜଣା ନାହିଁ । କିନ୍ତୁ ସେ ସେଠି ସେମିତି ବସିଛି; ଭୟଙ୍କର ଝଡ଼ ତୋଫାନ ଆରମ୍ଭ ହେଲା । ମେଘରେ ଆକାଶ ଘୋଡ଼େଇ ହୋଇ ପଡ଼ିଲା ।

ସୁବଅଢ଼ ଅନ୍ଧାର ହୋଇ ଭୟଙ୍କର ବର୍ଷା ହେଲା । ସାହେବ ପିଲାଟି ସେହିପରି ବସିଥାଏ ।

ବର୍ଷା ଛାଡ଼ିଲାବେଳକୁ ପିଲାଟି ଦେଖେ ଯେ ରାତି ହୋଇ ଗଲାଣି । ସେ ମନେକଲା, ସେ ତ ଘର ଛାଡ଼ି ବହୁତ ଦୂର ଚାଲି ଅସିଛି, ଏ ଅନ୍ଧାର ରାତିରେ ଫେରିଯିବାକୁ ସେ କ'ଣ ଆଉ ବାଟ ପାଇପାରିବ ? ଅସମ୍ଭବ । ସେ ସେଇଠି ବସି ରହିଲା ।

ଏଣେ ତା ଘରେ ସମସ୍ତେ ବ୍ୟସ୍ତ ହୋଇ ପଡ଼ିଲେଣି । ଗୋସେଇଁମା ଅଥୟ ହୋଇ ଟିକିଏ ବସି ରହି ପାରୁ ନ ଥାନ୍ତି । ସେ ଖାଲି ଘରକୁ ବାହାରକୁ ହେଉଥାନ୍ତି ଓ ପିଲାର ନାଆଁ ଧରି ବଡ଼ ପାଟି କରି ଡାକୁଥାନ୍ତି । ଚାକରଅଢ଼କୁ ଲୋକ ପଠାଇଲେ । କିନ୍ତୁ କେହି ହେଲେ ଖବର ଅଣିଦେଇ ପାରିଲେ ନାହିଁ । ଶେଷରେ ଗୋସେଇଁମା ନିଜେ ଗୋଟିଏ ଲଣ୍ଠନ ଧରି ଗୋଟିଏ ଚାକରକୁ ସଙ୍ଗରେ ନେଇ ନାତିକୁ ଖୋଜିବାକୁ ବାହାରି ପଡ଼ିଲେ ।

ଅନେକ ବାଟ ବୁଲି ବୁଲି ଗୋସେଇଁମା ଶେଷରେ ସେହି ଝରଣା କୂଳରେ ଅସି ଦେଖନ୍ତି ତ ପିଲାଟି ବସିଛି । ସେ ଏକାବେଳକେ ଆଶ୍ଚର୍ଯ୍ୟ ହୋଇଗଲେ । ଏ ଅନ୍ଧାର ରାତିରେ ଘରଠୁଁ ଏତେ ଦୂରରେ ଏ ନିର୍ଜନ ଜାଗାରେ ଏ ପିଲାଟା ଥିର ହୋଇ ବସିଛି କେମିତି ? ସେ ତା ମୁହଁ ଅଡ଼କୁ ଲଣ୍ଠନ ଦେଖାଇ ପଚାରିଲେ, "ବାପ ମୋର, ତତେ କ'ଣ ଭୋକ ଲାଗିଲା ନାହିଁ, କି ଭୟ ଲାଗିଲା ନାହିଁ ?"

ପିଲାଟି ଭୋକ କ'ଣ ଜାଣିଥିଲା । କିନ୍ତୁ ଅଉ ଜିନିଷଟି କ'ଣ ଜାଣି ନ ଥିବାରୁ ବୁଢ଼ୀକି ପଚାରିଲା—"ମା, ଭୟ କ'ଣ ?"

ସେହି ପିଲାଟିର ନାମ ନେଲସନ୍ । ପରେ ସେ ଇଂଲଣ୍ଡର ଜଣେ ବିଖ୍ୟାତ ବୀର ପୁରୁଷ ହେଲେ । ଦେଶଲାଗି ସେ ଏତେ ଯୁଦ୍ଧରେ ଜିଣିଥିଲେ ଯେ, ସେ କଥା ଶୁଣିଲେ ମନେହେବ, ସେ ପ୍ରକୃତରେ ଜୀବନରେ ଭୟ କି ଜିନିଷ ଜାଣି ନ ଥିଲେ ।

ପ୍ରଶ୍ନ—୧ । ପିଲାଟି ଝରଣା ପାଖକୁ ଯାଇଥିଲା କାହିଁକି ?

୨ । ସେଠାରେ ସେ ସକାଳୁ ଅନ୍ଧାର ହେବଯାଏ ଏକୁଟିଆ ରହିଲା କାହିଁକି ?

୩ । ଗୋସେଇଁମା ତା ପାଖରେ ଯାଇ କେତେବେଳେ ପହଞ୍ଚିଲେ ? ତାକୁ କ'ଣ ପଚାରିଲେ ଓ ସେ କ'ଣ ଉତ୍ତର ଦେଲା ?

୪ । ପିଲାଟିର ନାମ କ'ଣ ? ଭବିଷ୍ୟତରେ ସେ କିପରି ବୀରପୁରୁଷ ହେଲା ?

୫ । ଏ ଗପଟିରୁ କ'ଣ ଶିଖିଲ ?

୬ । ଶୂନ୍ୟସ୍ଥାନ ପୂରଣ କର :—

ବାପାଙ୍କ—ନ ମାନିଲେ ସେ—ହେବେ । —ପାଣି— ହୋଇ ବହୁଥାଏ । ଗୋସେଇଁମା—ଖୋଜିବାକୁ— ପଡ଼ିଲେ ।

---

## ଗରିବ ପିଲା କିପରି ବଡ଼ଲୋକ ହୋଇଛନ୍ତି

ଆମ ଦେଶର ଲୋକେ ମନେ କରନ୍ତି, ସାହେବମାନେ ବୋଧହୁଏ ସମସ୍ତେ ଧନୀ ଓ ସମସ୍ତେ ସୁଖରେ ଥାଆନ୍ତି । ଏପରି ଭାବିବା ଭୁଲ । ସେମାନଙ୍କ ଦେଶ ଇଂଲଣ୍ଡରେ ବହୁତ ଗରିବ ଲୋକ

ଅଛନ୍ତି, ଯେଉଁମାନେ ଖାଇବାକୁ କି ପିନ୍ଧିବାକୁ ପାଆନ୍ତି ନାହିଁ । କିନ୍ତୁ ସେ ଦେଶର ଲୋକେ ଏଡ଼େ କାମିକା ଯେ, ଗରିବ ହେଲେ ମଧ୍ୟ ବହୁତ ଚେଷ୍ଟା କରି କରି କ୍ରମେ ବଡ଼ଲୋକ ହୁଅନ୍ତି । ତାଙ୍କ ଦେଶର ଅନେକ ବଡ଼ଲୋକ ପିଲାଦିନେ ବଡ଼ ଗରିବ ଥିଲେ । ସେମାନେ ଅତି କଷ୍ଟରେ ବଢ଼ି ଓ କାମ କରି କରି ପରେ ଧନ ଓ ମାନ ପାଇଛନ୍ତି । ଏଠାରେ ଜଣକ କଥା କହିବା ।

କେତେ ବର୍ଷ ପୂର୍ବେ ପଞ୍ଚମ ଜର୍ଜ ବିଲାତର ରାଜା ଥିଲେ । ତାଙ୍କ ରାଜ୍ୟ ଶାସନ କରିବା ପାଇଁ ତାଙ୍କର ବହୁତ ମନ୍ତ୍ରୀ ଥାଆନ୍ତି । ସେହି ମନ୍ତ୍ରୀମାନଙ୍କ ମଧ୍ୟରେ ଜଣେ ପ୍ରଧାନ ମନ୍ତ୍ରୀ ଥାଆନ୍ତି । ରାଜାଙ୍କ ରାଜ୍ୟର ସବୁ ଭାର ତାଙ୍କର ହାତରେ ।

ମାକ୍‌ଡୋନାଲ୍‌ଡ ବୋଲି ଜଣେ ଲୋକ ଏହି ରାଜା ଜର୍ଜଙ୍କର ଦୁଇଥର ପ୍ରଧାନ ମନ୍ତ୍ରୀ ହୋଇ ପାରିଥିଲେ । ସେ ପିଲାଦିନେ ଭାରି ଗରିବ ଥିଲେ । ବିଲାତର ଗୋଟିଏ କେଉଟଗାଁରେ ତାଙ୍କର ଜନ୍ମ । ବାପାଙ୍କର କିଛି ସାମାନ୍ୟ କୃଷି ଥିଲା, କିନ୍ତୁ ତାହା ପ୍ରାୟ କିଛି ନୁହେଁ । ସେ ଏଡ଼େ ଗରିବ ଥିଲେ ଯେ, ପୁଅକୁ ପାଠ ପଢ଼ାଇ ପାରିଲେ ନାହିଁ । ମାକ୍‌ଡୋନାଲ୍‌ଡ ଗାଁ ଚାଟଶାଳୀରେ କିଛି ଲେଖାପଢ଼ି ଶିଖି ପଢ଼ା ଛାଡ଼ି ଦେଲେ ଓ ପେଟ ଦାଉରେ ଚାକିରି ଖୋଜିବାପାଇଁ ବିଲାତର ବଡ଼ ସହର ଲଣ୍ଡନକୁ ପଳାଇ ଆସିଲେ । ଲଣ୍ଡନ ସହରରେ ତାଙ୍କୁ ଆଶ୍ରୟ ଦେବାକୁ କେହି ନ ଥିଲେ । ମୂର୍ଖ ମଜୁରିଆମାନଙ୍କର ଚିଠି ଉପରେ ଠିକଣା ଲେଖି ସେଥିରୁ ଯାହା ଦୁଇପଇସା ପାଉଥିଲେ, ମାକ୍‌ଡୋନାଲ୍‌ଡ ସେଇଥିରେ ବଞ୍ଚୁଥିଲେ । ବିଲାତରେ ଭାରି ଶୀତ ହୁଏ । ସକାଳୁ ଲୋକେ ଗିନାଏ ଗରମ ଚା ନ ପିଇଲେ କାମ କରିପାରନ୍ତି ନାହିଁ ।

ମାକ୍‌ଡୋନାଲ୍‌ଡ ଗ୍ରୁ କଣିବା ପାଇଁ ପଇସା ପାଇପାରନ୍ତି ନାହିଁ । ସେ ଖାଲି ଟିକିଏ ଗରମ ପାଣି ପିଇ କାମକୁ ବାହାରନ୍ତି, ଦନପାଢ କାମ କରନ୍ତି, ଘରେ ନାନା ବହି ଅଣି ପଢନ୍ତି । ଏହିପରି ଚେଷ୍ଟା କରି କରି ସେ ଶେଷରେ ବିଲାତରେ ଜଣେ ବଡ଼ ପଣ୍ଡିତ ହେଲେ । ତାପରେ ବଡ଼ ମନ୍ତ୍ରୀ ହୋଇ ପାରିଥିଲେ ।

ପିଲାଏ, ତୁମ ଭିତରେ ଏଭଳି କେତେ ଜଣ ମଣିଷ ହେବାକୁ ଚେଷ୍ଟା କରୁଛ କହିଲ ?

ପ୍ରଶ୍ନ—୧ । ମାକ୍‌ଡୋନାଲ୍‌ଡଙ୍କ ପିଲାଦିନ କଥା କ'ଣ ଜାଣ ?
୨ । ସେ କିପରି ବଡ଼ଲୋକ ହେଲେ ?
୩ । ବିଲାତର ବଡ଼ ସହର କିଏ ?
୪ । ଏ ଗପଟିରୁ ତୁମେ କି ଶିକ୍ଷା ପାଇଲ ?

---

## ବଣଭୋଜି

ମାଷ୍ଟରେ କହିଲେ "ଆଁ କୁଡ଼ା ଧାନକୁ
ଏକାଠି କର ରେ ପିଲେ ,
ବଣ ଭୋଜି କରି ମଜଜ କରିବା
ନଈକୂଳ ଦୂର ବିଲେ ।"
ନଗ୍ରିମାକୁ ଦେଲେ କୁଟିଦେଲି ଧାନ,
ଡାଲି ଦେଲା ସାହୁଅଣୀ,
ସାରୁ ବାଇଗଣ ହାଡ଼ୁ ସ୍ୱାଇଁ ଦେଲା,
ବାରକୁ ତାହାର ଅଣି ।

ବଣ ତୋଟାମାନଙ୍କୁ ଗୋଟାଇଲୁଁ କାଠ
ଚୂଲି ଦେଲେ ଗୁଡ଼ୁ ଖୋଳି
ବାସନ କୁସନ ନେଇଥିଲୁଁ ବହି
ବସାଇଲୁଁ ମାଟି ବୋଳି ।

ସରିତା, କୁନ୍ତୁପା, ମୁରଲୀ, ଅର୍ଜୁନ
ଧରିଲେ ନଈରୁ ମାଛ,
ସଦା ବିଶୋଇର ଗାଈ ଦୁହିଁ ଥିଲା
'ନେଉରା ଖାଇଲା ନାଚ ।'

ହସିଲୁଁ ଖେଳିଲୁଁ, ଗଛରେ ଚଢ଼ିଲୁଁ
ପହଁରିଲୁଁ ନଈଜଳେ
କଅଁଳ ଘାସରେ, ଆରାମେ ଶୋଇଲୁଁ
ଘନ ଗଛଛାଇ ତଳେ ।

ଭାତ, ଡାଲି, ମାଛ— ଆମ୍ବିଳ ରାନ୍ଧିଲୁଁ
ଖାଇଲୁଁ ପଦ୍ମ ପତରେ
ଘରେ ନିତ ଖାଉଁ କିନ୍ତୁ ବଣ-ଭୋଜି
ଲାଖି ରହିଛି ମନରେ ।

ପ୍ରଶ୍ନ—୧ । କେଉଁ ସ୍ଥାନରେ ବଣଭୋଜିଟି ହେଲା ?

୨ । ଭୋଜିପାଇଁ କି କି ଜିନିଷ କେଉଁଠାରୁ ସଂଗ୍ରହ କଲ ?

୩ । ବଣଭୋଜି-ମଜାକ ଉପରେ ଭଲି ବର୍ଣ୍ଣନ କରି ତମ ସାଙ୍ଗ ପାଖକୁ ଖଣ୍ଡିଏ ଚିଠି ଲେଖ ।

# ଫୁଲ

ନାନା ଋତୁରେ ଭିନ୍ନ ଭିନ୍ନ ଫୁଲ ଫୁଟେ । ସେମାନଙ୍କର ମନୋହର ବର୍ଣ୍ଣରେ ଗୃହଅଙ୍ଗ ସୁନ୍ଦର ଦେଖାଯାଏ । ସେମାନଙ୍କର ମଧୁର ଗନ୍ଧରେ ଗୃହଅଙ୍ଗ ମହକି ଉଠେ । ଏପରି ଘର ନାହିଁ, ଯାହାର ଆଗ ବା ପଛ ପଟେ ଫୁଲଗଛଟିଏ ନାହିଁ । ଫୁଲଟିଏ ଫୁଟିଲେ ବଗିଚା ଓ ତା' ସଙ୍ଗେ ଘର ମଧ୍ୟ ସୁନ୍ଦର ଦିଶେ । କେହି କେହି ଫୁଲକୁ ଏତେ ଭଲ ପାଆନ୍ତି ଯେ, ନିଜ ନିଜ ଘରର ଝରକା ତଳେ କୁଣ୍ଡ ରଖି ଲତା ବା ଗୁଳ୍ମ ବଢ଼ାଇ ଥାନ୍ତି । ଯେପରି କି ଫୁଲଗୁଡ଼ିକ ଠିକ୍ ତାଙ୍କ ଝରକା ଉପରେ ରହି ଫୁଟିବ, ସେ ସେଗୁଡ଼ିକର ବର୍ଣ୍ଣ ଓ ବାସନା ଘରେ ବସି କାମ କରୁଥିଲା ବେଳେ ମଧ୍ୟ ଭୋଗ କରୁଥିବେ ।

ଗଛ ଓ ଲତାମାନଙ୍କରେ ଏତେ ସୁନ୍ଦର, ଏତେ ବର୍ଣ୍ଣର, ଏତେ ଆକାରର ଫୁଲ ଯେ ଫୁଟନ୍ତି, ସେ ସବୁ କଣ ପ୍ରକୃତରେ ଆମ ପାଇଁ ନୁହେଁ । ଗଛ, ଲତା ପ୍ରକୃତରେ ନିଜ ପାଇଁ ହିଁ ନିଜ ଦେହରେ ଫୁଲ ଫୁଟାନ୍ତି । ସମସ୍ତେ ଜାଣନ୍ତି ଫୁଲରୁ ଫଳ ହୁଏ । ଫୁଲ ଭିତରେ କେଶର ଥାଏ । ମାଈ ଫୁଲ ଓ ଅଣ୍ଡିରା ଫୁଲର କେଶର ମିଶିଲେ ଫଳ ଜନ୍ମ ହୁଏ । ମହୁମାଛି, ପ୍ରଜାପତି, ବିରୁଡ଼ି ଓ ଅନ୍ୟ ଅନେକ କୀଟପତଙ୍ଗ ଏକ ଫୁଲରୁ ଅନ୍ୟ ଫୁଲକୁ ଉଡ଼ି ଉଡ଼ି ଯାଇ ବସନ୍ତି । ସେଇଥିରେ ଗୋଟିଏ ଫୁଲର କେଶର ଅନ୍ୟ ଫୁଲର କେଶରରେ ମିଶିଯାଏ । ଏହି କୀଟ ପତଙ୍ଗମାନଙ୍କୁ ନିଜ ପାଖକୁ ଟାଣି ଆଣିବା ପାଇଁ ଗଛ ଲତା ନିଜ ଦେହରେ ଫୁଲ ଫୁଟାନ୍ତି ଓ ଫୁଲମାନଙ୍କୁ ବର୍ଣ୍ଣ ଓ ଗନ୍ଧରେ ଏତେ ମନୋହର କରନ୍ତି ।

ଦେଖାଯାଏ ଯେ ଗାଢ଼ ରଙ୍ଗର ଫୁଲସବୁ ଦିନରେ ଫୁଟନ୍ତି । କାରଣ ଦିନର ଧଳା ଆଲୁଅରେ ଲାଲ୍, ନୀଳ, ହଳଦିଆ ପ୍ରଭୃତି ବର୍ଣ୍ଣର ଫୁଲକୁ କୀଟପତଙ୍ଗମାନେ ସହଜରେ ଦେଖି ପାରିବେ । ପୁଣି ଧଳା ବର୍ଣ୍ଣର ଫୁଲସବୁ ହିଁ ରାତିରେ ଫୁଟନ୍ତି । କାରଣ ରାତିର ଅନ୍ଧାରରେ କୀଟପତଙ୍ଗମାନେ ଧଳା ଫୁଲକୁ ସହଜରେ ବାରି ପାରିବେ । ବିଶେଷତଃ ରାତିରେ ଯେଉଁ ଫୁଲଗୁଡ଼ିକ ଫୁଟେ ସେଗୁଡ଼ିକର ଗନ୍ଧ ଭାରି ଚମତ୍କାର । କାରଣ କୀଟପତଙ୍ଗମାନେ ଫୁଲଗୁଡ଼ିକୁ ଦେଖି ନ ପାରିଲେ ମଧ୍ୟ, ସେମାନଙ୍କ ଗନ୍ଧରେ ସେମାନଙ୍କୁ ଠାବ କରି ପାରନ୍ତି । ମଲ୍ଲୀ, ରଜନୀଗନ୍ଧା ଓ ହେନା ଫୁଲ ଏହି ଶ୍ରେଣୀର ।

ଫୁଲ ଅଳ୍ପ ସମୟ ବଞ୍ଚି ରହେ । ବର୍ଣ୍ଣ ଓ ବାସନାରେ ଗୁଣିଅଡ଼ ଚମକାଇ ଫୁଲ ଅଳ୍ପ ସମୟ ପରେ ଶୁଖି ଝଡ଼ିପଡ଼େ । ସେଥିପାଇଁ ଫୁଲ ଶୁଖି ଝଡ଼ି ନଯାଉଁଣୁ ଅନେକ ସ୍ଥାନରେ ସେଗୁଡ଼ିକୁ ତୋଳି ନେଇ ସେଥିରୁ ଅତର ବାହାର କରି ନିଅନ୍ତି । ହେନା, କିଆ, କିଆ, ଗୋଲାପ ପ୍ରଭୃତି ଯେତେ ବାସନାଫୁଲ ଅଛି, ସେ ସବୁଥିରୁ ଅତର ବାହାର କରାଯାଉଛି । ଫୁଲ ମରି ଯାଉଛି, କିନ୍ତୁ ଅତରରେ ତାର ମଧୁର ବାସନାଟି ରହି ଯାଉଛି ।

ଫୁଲ ପରି ସୁନ୍ଦର, ନିର୍ମଳ ପଦାର୍ଥ ଜଗତରେ ଆଉ ନାହିଁ । ସେଥିପାଇଁ ସବୁ ଦେଶରେ ଲୋକେ ଧର୍ମକାର୍ଯ୍ୟରେ, ଦେବତା ପୂଜା-ପାଇଁ ଫୁଲ ବ୍ୟବହାର କରିଥାନ୍ତି । ଅତିଥିମାନଙ୍କୁ ଲୋକେ ଫୁଲର ମାଳା ଉପହାର ଦିଅନ୍ତି । ସ୍ତ୍ରୀଲୋକମାନେ ଫୁଲକୁ ଅଳଂକାର ସ୍ୱରୂପ ବ୍ୟବହାର କରିଥାନ୍ତି ।

ଘର ଓ ଘରର ଗୁଣିପାଖ ସୁନ୍ଦର କରିବାପାଇଁ ପ୍ରତ୍ୟେକ ଲୋକ ଫୁଲ ଗଛ ଲଗାଇବା ଉଚିତ । ପ୍ରତ୍ୟେକ ବିଦ୍ୟାଳୟରେ

ଫୁଲର ବଗିଚ୍ଚ ରଖାଯାଏ । ଫଳେ ପିଲାଦନରୁ ଫୁଲକୁ ଭଲ ପାଇବା ଓ ଫୁଲଗଛ ଜାଣିବା ଅବଶ୍ୟକ । କାରଣ ଫୁଲର ସୁବାସ ଓ ସୌନ୍ଦର୍ଯ୍ୟ ପ୍ରାଣରେ ଅପୂର୍ବ ସନ୍ତୋଷ ଦେଇଥାଏ ।

ପ୍ରଶ୍ନ—୧ । ଗଛରେ ଫୁଲ କାହିଁକି ଫୁଟେ ?
୨ । ଦନରେ କି କି ରଙ୍ଗର ଫୁଲ ଫୁଟେ ?
୩ । କେତୋଟି ବାସନା ଥିବା ଫୁଲର ନାମ କହ ।

---

## ବହୁରୂପୀ ଜଳ

ଅମେ ପ୍ରତଦନ ପାଣିରେ ଗାଧୋଉଁ, ପାଣି ପିଉଁ, ବଗିଚ୍ଚରେ ପାଣି ଦେଉଁ, ପାଣିରେ ଲୁଗାପଟା ସଫା କରୁଁ । ଜଣାପଡ଼ୁଛ ପାଣି ବଡ଼ ଧୀର, ସ୍ଥିର, ଶାନ୍ତ । ଯେଉଁଠି ରଖ, ସେଇଠାରେ ରହୁଥାଏ । ବଡ଼ ନିରୀହ ।

କନ୍ତୁ ପାଣିପରି ବହୁରୂପୀ ପୃଥିବୀରେ ଦ୍ୱିତୀୟ ନାହିଁ । କୂଅ ପୋଖରୀରେ ଯେଉଁ ପାଣି ନତାନ୍ତ ଶାନ୍ତ ଦେଖାଯାଏ, ସେଇ ପାଣି ସମୁଦ୍ରରେ ଓ ବଢ଼ିଲା ନଈରେ ଭୟଙ୍କର ହୋଇଉଠେ । ସମୁଦ୍ରରେ ସେ ବଡ଼ ବଡ଼ ଜାହାଜକୁ ବୁଡ଼ାଇ ଦଏ । ନଈରେ ସେ ମଣିଷ, ଗାଈ ଗୋରୁ, ବଡ଼ ବଡ଼ ଗଛ, ଘରଦ୍ୱାର ଭସାଇ ନଏ ।

ସେଇ ପାଣି ପୁଣି ଦେଖାଦଏ ସକାଳେ ସବୁଜ ଘାସ ଉପରେ କାକର ହୋଇ, ଅସଂଖ୍ୟ ମୁକ୍ତା ବିଞ୍ଛା ହେଲାପରି । ସେହ ପୁଣି ମେଘ ଓ କୁହୁଡ଼ି ହୋଇ ପବନରେ ଉଡ଼ି ବୁଲେ ।

ପୁଣି ସେଇ ବରଫ ହୋଇ ପଥର ପରି ଟାଣ ହୁଏ, ବର୍ଷା ସାଥିରେ ବେଳେ ବେଳେ କୁଆପଥର ହୋଇ ପଡ଼େ ।

କୂଅ, ନଈ ଓ ପୋଖରୀମାନଙ୍କରେ ପାଣି ଅଛି ବୋଲି ଆମେ ବଞ୍ଚିଛୁ । ପାଣି ବିନା ଆମେ ବେଶୀକ୍ଷଣ ବଞ୍ଚିପାରିବା ନାହିଁ । ପୁଣି ଜମିରେ, ବଗିଚାରେ ପାଣିଯୋଗୁଁ କ୍ଷେତ ହୁଏ, ମଞ୍ଜପରିବା ହୁଏ । ସେ ସବୁ ଖାଇ ଆମେ ବଞ୍ଚୁ, ତେଣୁ ପାଣି ଆମକୁ ଖାଇବା ଓ ପିଇବା ଜିନିଷ ଯୋଗାଏ । ବର୍ଷାକାଳରେ ଆମ ଦେଶରେ ଏତେ ବର୍ଷା ହୁଏ ଯେ ନଈ, ନାଳ, କୂଅ, ପୋଖରୀ ସବୁ ଭର୍ତ୍ତି ହୋଇଯାଏ । ନଈରେ ବଢ଼ି ହୁଏ । କ୍ଷେତସବୁ ପାଣିରେ ବୁଡ଼ି ରହେ ।

ବର୍ଷା ଋତୁ ଚାଲିଯାଏ । ତା'ପରେ ଶରତ ଓ ହେମନ୍ତ ଋତୁ ଆସେ । ପାଣି ସବୁ କମି କମି, ଶୁଖି ଶୁଖି ଆସେ । ଗ୍ରୀଷ୍ମ ଋତୁରେ ଟାଣ ଖରା ହେଲେ ନଈ, ପୋଖରୀ ଏକଦମ୍ ଶୁଖି ଯାଏ, ଟୋପାଏ ସୁଦ୍ଧା ଜଳ ନ ଥାଏ । ଖରାଦିନେ ଲୋକେ ଜଳ ବିନା ଭାରି କଷ୍ଟ ପାଆନ୍ତି । ଲୋକେ ବର୍ଷାକୁ ଅନାଇ ରହନ୍ତି । କିନ୍ତୁ ପାଣି ତାର ନିଜର ଖିଆଲ ଅନୁସାରେ କାମ କରେ । ତାର ଇଚ୍ଛା ଯେତେବେଳେ ହେବ, ସେତିକିବେଳେ ଆସିବ । ପାଣି ନ ଥିଲାବେଳେ ଡାକ ଡାକ ଶୁଣିବ ନାହିଁ । ଯେତେବେଳେ ଆସିବ, ଆମର ଦରକାର ନ ଥିଲେ ମଧ୍ୟ ସେ ଅଜାଡ଼ି ହେଉଥିବ ।

କିନ୍ତୁ ଆମେ ବାହାରୁ ଦେଖି ପାଣିକି ଯେପରି ପାଗଳି ବୋଲି ଭାବିବା, ସେ ପ୍ରକୃତରେ ତାହା ନୁହେଁ । ସେ ଠିକ୍ ତାର ନିଜ ନିୟମ ଅନୁସାରେ କାମ କରେ ଏବଂ ଯାହା କରେ ତାହା ଲୋକଙ୍କ ମଙ୍ଗଳପାଇଁ । ଆମର ମଙ୍ଗଳ ପାଇଁହିଁ ସେ ନାନା ରୂପ

ଧାରଣ କରେ । ଆମରମାନଙ୍କପାଇଁ ସେ ଖରାରେ ବାଷ୍ପ ହୋଇ ଉପରକୁ ଉଠେ ଓ ପୁଣି ଦରକାର ବେଳକୁ ଆକାଶରୁ ପାଣି ହୋଇ ଖସେ । ଅଥିବା ପାଣି ଭୂଇଁତଳକୁ ଗୁଳିଯାଏ । ଝରଣା ହୋଇ ଆପେ ବାହାରେ ବା ଆମେ ଆମ ଦରକାରପାଇଁ କୂଅ ଖୋଳିଲେ ଫେର୍ ଆସି ଆମର ସେବା କରେ ।

ଆମ ଦେଶରେ ଅଷାଢ଼ ମାସର ପ୍ରଥମ ଦିନ ବା ଇଂରାଜି ଜୁନ୍ ମାସର ୧୩ ବା ୧୪ ତାରିଖକୁ ବର୍ଷାଋତୁ ଆରମ୍ଭ ହୁଏ । ପାଣିକୁ ଆମେ ଦୁଷ୍ଟ ବା ପାଗଳ କହିଲେ ମଧ୍ୟ ଆଶ୍ଚର୍ଯ୍ୟ କଥା ଏହି ଯେ, ପ୍ରତିବର୍ଷ ସେ ଠିକ୍ ଏଇ ସମୟକୁ ଆସି ମେଘରୂପେ ଦେଖା ଦେଇ ବର୍ଷାଋତୁ ଆରମ୍ଭ କରି ଦିଏ । ଜଳ ନିଜେ ବିଶୁଦ୍ଧ । ପୃଥିବୀରେ ପଡ଼ିଲେ ପୃଥିବୀର ମଇଳା ସେଥିରେ ମିଶିଯିବାରୁ ତାହା ଅପରିଷ୍କୃତ ହୋଇଉଠେ । କିନ୍ତୁ ପାଣିକୁ ଫୁଟେଇ, ଛାଣି ମଇଳା ଅଂଶ ବାହାର କରିନେଲେ ପାଣି ପୁଣି ବିଶୁଦ୍ଧ ହୋଇଯାଏ । ବିଶୁଦ୍ଧ ଜଳ ପିଇବାର ଅଭ୍ୟାସ କଲେ ପେଟର ରୋଗ ହେବ ନାହିଁ ।

ପ୍ରଶ୍ନ—୧ । ପାଣି ଆମର କି କି କାମରେ ଲାଗେ ?

୨ । କୂଅପାଣି ଓ ନଈପାଣି ଭିତରେ ପ୍ରଭେଦ କଣ ?

୩ । ବର୍ଷାଋତୁ କେବେ ଆରମ୍ଭ ହୁଏ ?

୪ । ପାଣିକୁ କିପରି ବିଶୁଦ୍ଧ କରାଯାଏ ?

---

## ଆମ ଗାଁ ବୁଢ଼ୀ

ଝୋଟ ପର ଧଳା ବାଳ, ନଇଁ ପଡ଼େ ମୁଣ୍ଡ
ପାକୁ ପାକୁ କରୁଥାଏ ପାକୁଅ ତା ତୁଣ୍ଡ,

ବାଡ଼ି ଧରି ଧୀରେ ଧୀରେ ବୁଲୁଥାଏ ଗାଁଅ
'ଅମ ଗାଁଅ ବୁଢ଼ୀ' ବୋଲି ଡାକ ତାର ନାଅଁ ।



ଗାଁଅ ଯାକ ନାତି ତାର ସେ ସଭିଙ୍କ ଆଈ
ପିଲାଏ ବାଡ଼ିଟା ତାର ନିଅନ୍ତି ଛଡ଼ାଇ,

ବଡ଼ ଲୋକେ କଉତୁକେ କରୁଥିବେ ହାଁ' ହାଁ'
'ଅମଗାଁଅ ବୁଢ଼ୀ' ବୋଲି ଡାକ ତାର ନାଅଁ ।

ବୁଢ଼ୀ ପଶେ ଘରେ ଘରେ ବନା ଡାକସ୍ୱରେ
ଗାଳି ଦେଇ ଗାଆଁ ବୋହୂ ଝିଅଙ୍କୁ ତଅରେ,

ମଇଳା ଦେଖିଲେ ବୁଢ଼ୀ ହୋଇଯାଏ ନିଆଁ ।
ଆମ ଗାଆଁ ବୁଢ଼ୀ ବୋଲି ଡାକ ତାର ନାଆଁ ।

ସଞ୍ଜ ହେଲେ ବୁଢ଼ୀ ପାଖେ ଗାଆଁଯାକ ପିଲା
ଶୁଣିବାକୁ ଗପ ତା'ଠୁଁ ହୋନ୍ତି ଠେଲାପେଲା,

ଗପ ଶୁଣି ପିଲେ ଭୁଲିଯାନ୍ତି ଖିଅପିଅ
ଆମ ଗାଆଁ ବୁଢ଼ୀ ବୋଲି ଡାକ ତାର ନାଆଁ ।

ନିଜର ବୟସ ବୁଢ଼ୀ, ନିଜେ ନାହିଁ ଜାଣେ
ଏଇମିତ ଦେଖିଥିଲେ ବାପା ଜେଜାମାନେ,

ନାହିଁ ତାର ପୁଅ ଝିଅ, ନାହିଁ ତାର ସାହା
ଆମ ଗାଁଅ ବୁଢ଼ୀ ସିଏ, ସେଇ ତାର ନାଆଁ ।

ଜାହାକୁ ଧରିଲେ ଭୂତ ବୁଢ଼ୀ ଏକା ସାହା,
ସେଥିପାଇଁ ଡାକେ ତାକୁ ସାତଖଣ୍ଡ ଗାଆଁ ।

ବୁଢ଼ୀଯୋଗୁଁ ରହିଅଛୁ ଆମ ଗାଆଁ ନାଆଁ,
ଗାଆଁଟି ଯାକର ଅତି ପ୍ରିୟ ବୁଢ଼ୀ-ମାଆ ।

ପ୍ରଶ୍ନ—୧ । ବୁଢ଼ୀକୁ ଗାଆଁଲୋକେ କଣ ବୋଲି ଡାକନ୍ତି ?
୨ । ସମସ୍ତେ କାହିଁକି ତାକୁ ଏତେ ଆପଣାର କରିଥାନ୍ତି ?
୩ । ପିଲାମାନେ ସନ୍ଧ୍ୟାବେଳେ କାହିଁକି ତା ପାଖରେ ଜମା ହୁଅନ୍ତି ?

---

# ଇଟା

ଆମ ଦେଶରେ ସାଧାରଣତଃ ଲୋକେ ମାଟିରେ ଘର ତିଆରି କରିଥାନ୍ତି । ଗ୍ରାମମାନଙ୍କରେ ଲୋକେ ନିଜ ଜମିରୁ ମାଟି ଖୋଳି ଆଣି ସେଥିରେ ପାଣି ପକାଇ ଚକଟି କାଦୁଅ କରନ୍ତି । ତାକୁଇ ଦରକାର ମୁତାବକ ଦୀର୍ଘ ପ୍ରସ୍ଥ କରି ଉଚ୍ଚ ଭାବେ ଜମା କରନ୍ତି । ତାହା ଅଳ୍ପେ ଶୁଖିଗଲେ ଟାଣ ହୋଇ ଘରର କାନ୍ଥ ହୁଏ । ତା'ର ଉପରେ କାଠ ଓ ବାଉଁଶରେ ଗୃହ ତିଆରି କରି ନଡ଼ାରେ ଛାଉଣି କରିଦେଲେ ସୁନ୍ଦର ଘର ହୁଏ ।

କିନ୍ତୁ ଆଜି କେତେକ ଲୋକ ସେହି ମାଟିକୁ ଇଟା କରି, ସେହି ଇଟାରେ କାନ୍ଥ କରି ଘର ତିଆରନ୍ତି । ଇଟା ତିଆରି ଘର ମାଟି ଘର ଅପେକ୍ଷା ବହୁତ ମଜବୁତ ହୁଏ । ଜୀବ ଓ ମୂଷାଙ୍କ ଅତ୍ୟାଚାରରୁ ରକ୍ଷା ମିଳେ । ପାଣି, ପବନ ସହଜରେ ତାର ଅନିଷ୍ଟ କରି ପାରନ୍ତି ନାହିଁ ।

ଇଟା ତିଆରି ପାଇଁ ମଧ୍ୟ ମାଟି ଖୋଳି ତାକୁ ଚକଟି କାଦୁଅ କରିବାକୁ ହୁଏ । ତା'ପରେ ସେଥିରୁ ଗୋଡ଼, ପଥର ସବୁ ବାହାର କରି ଚକ୍‌କଣ କରାଯାଇ, ଗୋଟିଏ ଛାଞ୍ଚରେ ପକାଇ ଚୌକୋଣିଆ ଇଟା ସବୁ ତିଆରି କରାଯାଏ । ଏ ଅବସ୍ଥାରେ ଇଟା କଞ୍ଚା ଥାଏ । କାରଣ ତାହା କେବଳ କାଦୁଅ । ତା ପରେ ସେ ସବୁକୁ ଖୋଲା ଜାଗାରେ ମେଲାଇ ପକାଇ ଦିଆଯାଏ । ଟାଣ ଖରାରେ ସେ ସବୁ ଶୁଖି କ୍ରମେ ଟାଣ ହୋଇଯାଏ । ଅନେକ ଲୋକ ଏହି ଖରା-ଶୁଖା ଇଟାରେ ମଧ୍ୟ ଘର କରିଥାନ୍ତି । କିନ୍ତୁ ଖରା-ଶୁଖା ଇଟାକୁ ନିଆଁରେ ପୋଡ଼ିଲେ ପ୍ରକୃତ ଇଟା ବାହାରେ । ସେହି ଇଟା ପ୍ରକୃତରେ ମଜବୁତ୍ ।

ଇଟା ଯେଉଁଠି ପୋଡ଼ା ହୁଏ, ତାକୁ ଭାଟି କହନ୍ତି । ଭାଟିରେ ଖରା-ଶୁଖା ଇଟାସବୁକୁ ଥାକ ଥାକ କରି ଏକାଠି ଜମା କର ଦିଆଯାଏ । ତଳେ ନିଆଁ ଜାଳିବା ପାଇଁ ଚାରିପଟେ ଦୁଇ ତନୋଟି କରି ଫାଙ୍କ ଥାଏ । ବହୁତ କାଠ ସେଇ ଫାଙ୍କବାଟେ ପୂରାଇ ନିଆଁ ଲଗାଇ ଦିଆଯାଏ । ନିଆଁ ଦିନ ରାତି ଜଳେ । ସେଇ ନିଆଁର ତାତରେ ଜମା କରା ଯାଇଥିବା ହଜାର ହଜାର ଇଟା ପୋଡ଼ି ଲାଲ୍ ହୋଇଯାଏ । ଇଟା ପୋଡ଼ ହେବାକୁ ଚାରି ପାଞ୍ଚଦିନ ନିଆଁ ଦରକାର କରେ ।



ଇଟାଭାଟି

କେବଳ ଇଟା ଉପରେ ଇଟା ଥୋଇଦେଲେ ଘରର କାନ୍ଥ ହୋଇଯିବ ନାହିଁ । ଇଟାକୁ ଇଟାରେ ଯୋଡ଼ିବା ପାଇଁ ସୁରକି ଦରକାର । ଚୂନ ଓ ବାଲି ମିଶାଇ ସୁରକି ତିଆରି ହୁଏ । ଏହାକୁ ଇଟାର ଅଠା କୁହାଯାଇ ପାରେ । ସୁରକି ଦେଇ ଇଟାକୁ ଇଟା ଲଗାଇ ଦେଲେ ଖରା, ବର୍ଷା ଖାଇ ତାହା ପଥର ପରି ଶକ୍ତ ହୋଇଯାଏ ।

ମାଟିଘର ଅପେକ୍ଷା ଇଟା-ଘର ତିଆର କରିବାରେ ଖର୍ଚ୍ଚ ବେଶୀ । କିନ୍ତୁ ଆମେ ନିଜେ ନିଜେ ଇଟା ତିଆରି କରି ପାରିଲେ ଖର୍ଚ୍ଚ ବହୁତ କମିଯିବ । ଇଟା ତିଆରି ଭାରି ସହଜ କାମ । ଇଟା ତ ମାଟିରୁ ହେଉଛି । ମାଟି ସବୁଆଡ଼େ ମିଳୁଛି । ତେଣୁ ଇଟାରେ ଘର ନ କରି ମାଟିରେ କରିବ କାହିଁକି ? ଆମ ଗ୍ରାମମାନଙ୍କରେ ପ୍ରତ୍ୟେକ କୃଷକ ଯଦି ଇଟା ତିଆରି ଜାଣିଥାନ୍ତେ, ସେମାନେ ନିଜ ନିଜ ଘର ମାଟିରେ ନ କରି ଇଟାରେ କରନ୍ତେ । ଇଟାରେ ଘର ସୁନ୍ଦର ଓ ମଜବୁତ୍ ହୁଏ । ଆମ ଦେଶର ପ୍ରତ୍ୟେକ ପିଲା ମଧ୍ୟ ଇଟା ତିଆରି କରି ଜାଣିବା ଉଚିତ । ସାହେବମାନଙ୍କ ରାଜ୍ୟର ଜଣେ ପ୍ରଧାନ ମନ୍ତ୍ରୀ ଫୁରସତ୍ ପାଇଲେ ନିଜ ବଗିଚାରେ ନିଜ ହାତରେ ଇଟା ତିଆରି କରନ୍ତି ।

ପ୍ରଶ୍ନ—୧ । ମାଟି କାନ୍ଥ କିପରି ହୁଏ ?

୨ । ଇଟାଘର ମାଟିଘରଠାରୁ ଭଲ କାହିଁକି ?

---

## ଅଗ୍ନି

କଥାରେ କହନ୍ତି 'ଘରପୋଡ଼ିଠୁଁ ବିପତ୍ତି ନାହିଁ, କି ଘୋଡ଼ା ଚଢ଼ାଠୁଁ ସମ୍ପତ୍ତି ନାହିଁ ।' କାରଣ ଚୋରି ହେଲେହେଁ ଜିନିଷ ଫେରି ପାଇବାର ଆଶା ଥାଏ; କିନ୍ତୁ ଯେଉଁ ଜିନିଷ ନିଆଁ ଲାଗିଯାଏ, ତାହା ପାଉଁଶ ବା ଅଙ୍ଗାର ହୋଇଯାଏ, ସେ ଆଉ କିଛି ହେଲେ କାମରେ ଲାଗେ ନାହିଁ ।

ଅଗ୍ନି ବା **ନିଆଁ** ପ୍ରକୃତରେ ମନୁଷ୍ୟର ଏକ ଶତ୍ରୁ । ତାଙ୍କୁ ଛୁଇଁଲେଇ ସେ ଆମ ଦେହହାତ ପୋଡ଼ି ଦେବ । ଆମେ ଅସାବଧାନ ହେଲେ ସେ ଆମ ଘର, ଦ୍ୱାର, ଜିନିଷପତ୍ର ସବୁ ପୋଡ଼ି ଭସ୍ମ କରିଦେବ ।

କିନ୍ତୁ ଏଇ **ନିଆଁ** ମଧ୍ୟ ଆମର ଉପକାରୀ ବନ୍ଧୁ । ପ୍ରତିଦିନ ଚୁଲ୍ଲୀରେ ନିଆଁ ନ ଜଳିଲେ ଆମେ ସମସ୍ତେ ଉପାସ ରହିବା । ସଞ୍ଜବେଳେ ଦୀପରେ **ନିଆଁ** ନ ଜଳିଲେ ଆମ ଘର ସବୁ ଅନ୍ଧାର ରହିବ । ଶୀତଦିନେ ଟିକିଏ ସେକ ନ ହେଲେ ଆମ ଦେହ ହାତ କୋଲ୍ ମାରିଯିବ ।

**ନିଆଁ** ଆମକୁ ଦୁଇଟା ଜିନିଷ ଯୋଗାଏ । ଗୋଟିଏ ହେଉଛି ଆଲୁଅ, ଆଉ ଗୋଟିଏ ହେଉଛି ଉତ୍ତାପ ବା ତାତି । ଆମେ ଚୁଲ୍ଲୀରେ **ନିଆଁ** ଜାଳୁ ଉତ୍ତାପ ପାଇଁ । ସେହି ଉତ୍ତାପରେ ଆମର ରୋଷେଇ ହୁଏ, ପାଣି ଗରମ ହୁଏ । ସଞ୍ଜବେଳେ ଦୀପରେ, ଲଣ୍ଠନରେ ଯେଉଁ **ନିଆଁ** ଜଳେ, ତାହା କେବଳ ଆଲୁଅ ଦିଏ ।

ପୂର୍ବେ **ନିଆଁ** ଟିକିଏ ପାଇବା ଭାରି କଷ୍ଟର କାମ ଥିଲା । ଲୋକେ କାଠକୁ କାଠ ଘଷି, ପଥରକୁ ପଥରରେ ଘଷି ବା ପଥରକୁ ଲୁହାରେ ଘଷି **ନିଆଁ** ବାହାର କରୁଥିଲେ । **ନିଆଁ** ଲିଭିଗଲେ ଫେର ଜାଳିବା କଷ୍ଟକର ହେବ ବୋଲି କୌଣସି କୌଣସିଠାରେ **ନିଆଁ**କୁ ସର୍ବଦା ଜଳାଇ ରଖୁଥିଲେ ଓ ତାହା ଯେପରି ଲିଭି ନ ଯିବ ସେଥିପାଇଁ ସର୍ବଦା ଲୋକ ଜଗି ରହୁଥିଲେ । ଏବେ କିନ୍ତୁ **ନିଆଁ** କାଢ଼ିବା ଭାରି ସହଜ କାମ । ବଜାରରୁ ଦୁଇ ପଇସାର ଗୋଟିଏ ଦିଆସିଲି ପେଡ଼ି ନେଇ ଆସିଲେ ଆମେ ଏବେ ଯେତେବେଳେ ଇଚ୍ଛା ସେତେବେଳେ ଦରକାର ଅନୁସାରେ **ନିଆଁ** ବାହାର

କରିପାରୁଁ । ସ୍ୱିଡ଼େନ ବୋଲି ଏକ ଦେଶରେ ଏହି ଦିଆସିଲି ପେଡ଼ି ପ୍ରଥମେ ବାହାରିଲା ।

ଅଗ୍ନି ମନୁଷ୍ୟର ଉପକାରୀ ବନ୍ଧୁ ଜାଣି ଆମର ପୂର୍ବ ପୁରୁଷମାନେ ଅଗ୍ନିଙ୍କ ପୂଜା କରୁଥିଲେ । ଏବେ ବି ଆମ ଦେଶରେ ଯେ କୌଣସି ପୂଜା ହେଲେ ପୁରୋହିତମାନେ ଅଗ୍ନି ଜାଳି ହୋମ କରନ୍ତି ।

ଅଗ୍ନି କାଠ, କୁଟା, ତେଲ, ଘିଅ ସବୁ ଖାଇଯାଏ । ଲୁହା ପ୍ରଭୃତି କଠିନ ଧାତୁକୁ ମଧ୍ୟ ପୋଡ଼ି ପାଉଁଶ କରିଦିଏ । ଲୁହା, ସୁନା ପ୍ରଭୃତିର ଭସ୍ମ ବଡ଼ ବଡ଼ ରୋଗର ଔଷଧରେ ବ୍ୟବହୃତ ହୁଏ ।

ପ୍ରଶ୍ନ—୧ । ଆଗକାଳରେ ଲୋକେ ନିଆଁ କିପରି ପାଉଥିଲେ ?

୨ । ନିଆଁ ଆମର କି ଉପକାର କରେ ?

୩ । ଦିଆସିଲି ପ୍ରଥମେ କେଉଁ ଦେଶରେ ତିଆରି ହେଲା ?

---

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଗଡ଼ବଡ଼ୁ, ଶ୍ରୀ ରାଧାରମଣ ପ୍ରେସ୍, କଟକ—୧୯୫୨